# ଲାଇଫବୟ୍ ଯେଉଁଠି, ସ୍ୱାସ୍ଥ୍ୟ ସେଇଠି।







ଲାଇଫବୟ କହିଲେଇ ବୁଝାଏ ସ୍ୱାସ୍ଥ୍ୟ। ସାରା ଦିନର
କଠିନ ପରିଶ୍ରମ ପରେ..... କିଂବା ଖୁବ ଧୂଳିରେ ଗୋଟିଏ
ଟାଣୁଆ ଗେମ ଖେଳିଦେଲା ପରେ..... ଲାଇଫବୟରେ
ଗାଧୋଇ ପଡ଼ିଲେ କି ଆରାମ..... ସବୁରେ କେତେ ପରିଷ୍କାର
ଲାଗେ, ନିଜକୁ କେତେ ସୁସ୍ଥ ମନେ ହୁଏ।




## ଲାଇଫବୟ୍

**ଧୂଳିମଇଳାରେ ରହିଥିବା ଜୀବାଣୁଙ୍କୁ ଧୋଇଦିଏ।**

LINTAS-L95 1813 RY

ହିନ୍ଦୁସ୍ତାନ ଲିଭରଙ୍କ ଏକ ଉତ୍କୃଷ୍ଟ ଉତ୍ପାଦନ



"ମୁଁ ଜାଣେ, ଦାନ୍ତର ଛୋଟ ଛୋଟ
ଅବର୍ଜିଆ ଦାନବସବୁ ମୋ ଦାନ୍ତ କଣା
କରି ଦେଇ ପାରିବେ!

କାରଣ ମୋ ମା' ମୋତେ ବୁଝେଇ
ଦେଇଥିଲେ ଏଗୁଡ଼ିକ ପ୍ରକୃତରେ
ହେଉଛି ଜୀବାଣୁ' ('ବ୍ୟାକଟେରିଆ)'
ଯାହାକି ଖାଦ୍ୟକଣା ସହିତ ମିଶି
ଅମ୍ଳଛାଡ଼ନ୍ତି ଓ 'ଦାନ୍ତର ଏନାମେଲ୍'କୁ
ଆକ୍ରମଣ କରି 'ଦାନ୍ତ କଣା' କରନ୍ତି।



ମୁଁ କିନ୍ତୁ ଜାଣିଥିଲି ମୁଁ ସୁରକ୍ଷିତ କାରଣ
ମୋର ସୁରକ୍ଷାର ଅସ୍ତ୍ର ହେଉଛି

ମୋର
ପର ଫାଇଟର!

**ଫୋରହ୍ୟାନ୍ସ ଫ୍ଲୋରାଇଡ।**
ଦାନ୍ତକଣା ବିରୁଦ୍ଧରେ ସଂଗ୍ରାମରେ ଏହା ମୋତେ
ବିଜୟୀ ହେବାରେ ସାହାଯ୍ୟ କରେ।






ମୋ ସୁପରଫାଇଟର୍‌ରେ ଥିବା
ଫ୍ଲୋରାଇଡ଼ ମୋର 'ଦାନ୍ତ ଏନାମେଲ୍'କୁ ସୁଦୃଢ଼
କରିଦିଏ ଓ ଯନ୍ତ୍ରଣାଦାୟକ 'ଦାନ୍ତକଣା' କରେଇ ଦିଏ ନାହିଁ।

ମୋ ମା' ସତରେ ଭାରୀ ଭଲ। ମୁଁ ମୋ ମାଙ୍କଠାରୁହିଁ ମୋର
ସ୍ୱାଦଭରା, ଫେଣଭରା ସୁପର ଫାଇଟର୍ କଥା ସବୁ
ଶିଖି ନେଇଛି।"




29-GM-203 OR

# ସର୍ଫ କିଣିବାରେ ହିଁ ଅଛି ଅଧିକ ବିଜ୍ଞତା

*Anil Kumar Panigrahy*

"ସତ କହୁଛି, ସର୍ଫ କିଣିବା ଭଳି ବେଶୀ ବୁଦ୍ଧିମାନୀର କାମ ଆଉ କିଛି ନାହିଁ । ଏହାର ପାୱାର ପ୍ୟାକ୍‌ଡ ଫର୍ମୁଲା ଆପଣଙ୍କ ପଇସାର ସର୍ବୋତ୍କୃଷ୍ଟ ମୂଲ୍ୟ ଅସୁଲ କରିଦିଏ ।"

**ସର୍ବୋତ୍କୃଷ୍ଟ ମୂଲ୍ୟ ? ପ୍ରଥମରୁ ହିଁ ତ ସର୍ଫ'ର ଦାମ ବେଶୀ ?**

"ଆଚ୍ଛା ବାବୁ, ପ୍ରଥମେ ଏହାର ଲାଭକୁ ତ ଦେଖନ୍ତୁ । ଏକମାତ୍ର ସର୍ଫହିଁ ସବୁଠୁ ବେଶୀ ଧଳା କରି ଧୁଏ ଆଉ ଲୁଗାପଟାକୁ ରଖେ ସବୁଠୁ ବେଶୀ ସୁରକ୍ଷିତ । ସେଇଥିପାଇଁ ତ ସବୁବେଳେ ଲୁଗାପଟା ନୂଆ ଭଳି ଦିଶେ । ଫଳରେ ନାନା ଭାବେ ଆପଣଙ୍କର ବେଶୀ ବେଶୀ ପଇସା ବଞ୍ଚେ । ଏବେ ସର୍ବୋତ୍କୃଷ୍ଟ ମୂଲ୍ୟ ଅସୁଲ କରିବାର ମାନେ ବୁଝିଲେ ତ ?"

**ଠିକ ଅଛି ଲଳିତା ଦେବୀ, କିନ୍ତୁ କ'ଣ ଖାଲି ଏତିକି ?**

"ନା, ନା, ଆହୁରି ଅଛି । ପ୍ରତ୍ୟେକ ୧/୨ କିଲୋ ସର୍ଫ ପାଉଡର ୧ କିଲୋ ସାଧାରଣ ପାଉଡର ସହିତ ସମାନ । ମାନେ, କିଲେ ସାଧାରଣ ପାଉଡର ଯେତେ ଲୁଗାପଟା ଧୁଏ, ଅଧ କିଲେ ସର୍ଫରେ ସେତିକି ଧୋଇ ହୁଏ । ତାହେଲେ ସର୍ଫରେ ଆହୁରି ଲାଭ ପାଉଛନ୍ତି, ନୁହେଁକି ?"



୧ କିଲୋ ସାଧାରଣ ପାଉଡର

୧/୨ କିଲୋ ସର୍ଫ

**ଏହାର ଅର୍ଥ ସର୍ଫ ନକଳ୍ପ ଉପାୟରେ ହି**
**ଗୋଟି ଗୋଟି କରି ପଇସା ଅସୁଲ କରିଦିଏ**

"......ତେଣୁ ଏକାଧିକ ଭାବେ ଆପଣଙ୍କର ଲାଭ ହୁଏ । ଶସ୍ତା କାହେ ବାରମ୍ବାର ..... ଉକ୍ତିଟି ଶୁଣିଥିବେ ନିଶ୍ଚୟ । ସେଇଭଳି, ଶସ୍ତା ପାଉଡର ଆଉ ସର୍ଫ ଭିତରେ ତୁଳନା ନାହିଁ । ସେଇଥିପାଇଁ ସର୍ଫ କିଣିବାରେ ହିଁ ଅଛି ଅଧିକ ବିଜ୍ଞତା ।"



Wonder what her smile meant.
I'd walked up to her
and offered my pack
of fresh mint
bubble gum.
She popped
one in.
And she smiled .....




Was it my charm, or was it my bubble gum?




Fixy Foxy
Spearmint Bubble Gum

Dattaram NP

# ଜହ୍ନମାମୁଁ


ସଂସ୍ଥାପକ : 'ଚକ୍ରପାଣି'

ସଞ୍ଚାଳକ : ନାଗି ରେଡ୍ଡୀ


ଶିବ-ମାହାତ୍ମ୍ୟ ଭାରତୀୟ ପରମ୍ପରାର ଗୋଟିଏ ମହାନ୍ ଅଂଶ । ଭାରତର ଦକ୍ଷିଣ ବିନ୍ଦୁରେ ରାମେଶ୍ୱରମ୍ ରୂପେ ଏବଂ ଉତ୍ତର ବିନ୍ଦୁରେ କେଦାରନାଥ ରୂପେ ଶିବ ପୂଜିତ । ଶିବଲୀଳା ଏହି ସଂଖ୍ୟାରେ ଶେଷ ହେଲା । ଆରମ୍ଭ ହେବ ଉତ୍ତର-ରାମ-ଚରିତ ।

## ଅମରବାଣୀ

ଶନୈଃ ପନ୍ଥାଃ ଶନୈଃ କନ୍ଥା ଶନୈଃ ପର୍ବତଲଂଘନମ୍ ।
ଶନୈର୍ବିଦ୍ୟା ଶନୈର୍ବିତ୍ତଂ ପଞ୍ଚୈତାନି ଶନୈଃ ଶନୈଃ ॥

[ଏକ ପରେ ଏକ ପାଦ ପକାଇ ଯାହା କରିବାକୁ ପଡ଼େ; ରେଜେଇ ସିଲେଇ କରିହୁଏ କ୍ରମାଗତ ସୂଚୀ ଚଳାଇ, କ୍ରମେ କ୍ରମେ ପର୍ବତ ଆରୋହଣ କରିହୁଏ; କ୍ରମେ କ୍ରମେ ବିଦ୍ୟା ଓ ବିତ୍ତ ଆସେ । ଏ ପଞ୍ଚକାର୍ଯ୍ୟର ବିଧି ଏହିପରି ।]


ବର୍ଷ : ୨୦ ସେପ୍ଟେମ୍ବର ୧୯୮୭ ଅଙ୍କ : ୩

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦











ସାନ ମୁନ୍ନ'ର ମନ ମୋଟେ ଭଲ ନାହିଁ
ଖେଳ ଖେଳିବା ବିନା ତ ରହି ହୁଏ ନାହିଁ ।
ସିଏ କିସ ବା କରିବ ଗ' ଦେହ ଭଲ ନାହିଁ
ଖେଳ ସାଙ୍ଗସାଥି କେହି ଶେଯ ପାଖ ମାଡ଼ନ୍ତି ନାହିଁ ॥

ଏକା ଖେଳିବା ଲାଗି ବହୁ ଭାବି ଚିନ୍ତି
ବାକ୍ସରୁ କାଢ଼ିଲା ସିଏ ୧୨ ରଙ୍ଗରଙ୍ଗିଆ ସାଥି ।
କାଗଜ ଉପରେ ଦେଖ, କଲମ କରେ ଗତି
ସୃଷ୍ଟି ହେଲା ଗୁଡ଼ି, ନଟ୍ଟୁ, ବଲେଇ, ଗଣ୍ଡା, ହାତି ॥

ଏକୋ ସବେ ଉପଯୋଗୀ, ପାଗୁଆ, ନେଳିଆ
ବାଦାମୀ, ହଳଦି ପୁଣି ପାଟଳ, ନାଲିଆ ।
ଭାଓଲେଟ୍, ଗାଇଗଛି ଆଉ ନାରଙ୍ଗି, କାଳିଆ
ତମ ଲାଗି ପ୍ରତି ସେଟ୍ ଯେ ଦଶ ରଙ୍ଗିଆ

EKCO

## ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



### ମଶକ-ତାଡ଼କ ସଙ୍ଗୀତ !

ମାଣ୍ଟ୍ରିଲ୍‌ର ଜଣେ ଉଦ୍‌ଭାବକ ଏକ ପ୍ରକାର ଯନ୍ତ୍ର ବାହାର କରିଛନ୍ତି, ଯାହାର ବୋତାମ ଚିପିଲେ ତାହା ଏଭଳି କେତେକ ଧ୍ୱନି ବାହାର କରିବ ଯାହାକି ମଣିଷଙ୍କ କାନକୁ ଶୁଣାଯିବ ନାହିଁ, କିନ୍ତୁ ସେ ଧ୍ୱନି-ତରଙ୍ଗ ମଶାମାନଙ୍କୁ ତଡ଼ିବ ।



### ପ୍ରବୀଣା

ଶହେ କୋଡ଼ିଏ ବର୍ଷ ବୟସ୍କା ଜାପାନୀ ବୃଦ୍ଧାଙ୍କ ମୃତ୍ୟୁ ପରେ ବର୍ତ୍ତମାନ ଇଂଲଣ୍ଡର ଅଧିବାସୀ ୧୧୨ ବର୍ଷ ବୟସ୍କା ଜଣେ ମହିଳା ହିଁ ବିଶ୍ୱର ସବୁଠାରୁ ବେଶି ବୟସର ନାରୀ ।



### ବହିଠୁଁ ବଡ଼ ଶିକ୍ଷକ ନାହିଁ

ବର୍ତ୍ତମାନ ଅନେକେ ଟେଲିଭିଜନ୍ ଜରିଆରେ ଶିକ୍ଷା କାର୍ଯ୍ୟକ୍ରମ ସପକ୍ଷରେ ମତ ଦେଉଛନ୍ତି । କିନ୍ତୁ ବିଶେଷଜ୍ଞମାନେ କହୁଛନ୍ତି, ବହି ପଢ଼ି ଜଣେ ଛାତ୍ର ଗୋଟିଏ ବିଷୟକୁ ଯେପରି ବୁଝେ ଓ ମନେ ରଖିପାରେ, ଟି.ଭି. ଦ୍ୱାରା ସେ ସେତେଦୂର ଲାଭବାନ୍ ହୁଏ ନାହିଁ ।



### ଗୁପ୍ତଚର ବନ୍ଧୁକ

କେହି କୌଣସି ବେଆଇନ୍ ଜିନିଷ ନେଇ ବିମାନ ବନ୍ଦର ଦେଇ ଗଲାବେଳେ କର୍ମଚାରୀମାନେ ସବୁବେଳେ ଧରି ପାରନ୍ତି ନାହିଁ । କିନ୍ତୁ ବର୍ତ୍ତମାନ ଏପରି ଏକ ବନ୍ଧୁକ ଉଦ୍‌ଭାବିତ ହେଉଛି, ଯାହାକି ବେଆଇନ୍ ଜିନିଷ ଲୁଚିଥିବା ସ୍ଥାନକୁ ବଳେ ବଳେ ମୃଦୁ ଗୁଳି ଚଳାଇଦେବ ।

# କଚ

ଯେତେବେଳେ ବାରମ୍ବାର ଦେବତା ଓ ଅସୁରମାନଙ୍କ ଭିତରେ ଯୁଦ୍ଧ ହେଉଥାଏ, ସେତେବେଳେ ଯୁଦ୍ଧରେ ନିହତ ଅସୁରମାନଙ୍କୁ ସେମାନଙ୍କ ଗୁରୁ ଶୁକ୍ରାଚାର୍ଯ୍ୟ ମୃତସଞ୍ଜୀବନୀ ମନ୍ତ୍ର ପଢ଼ି ପୁନର୍ଜୀବନ ଦେଉଥାନ୍ତି । ଦେବତାମାନେ ସ୍ଥିର କଲେ, ଯେ କୌଣସି ପ୍ରକାରେ ସେମାନଙ୍କୁ ବି ମୃତସଞ୍ଜୀବନୀ ଶିଖିନେବାକୁ ହେବ । ସେମାନେ ଦେବଗୁରୁ ବୃହସ୍ପତିଙ୍କ ପୁତ୍ର କଚଙ୍କୁ ଶୁକ୍ରାଚାର୍ଯ୍ୟଙ୍କ ନିକଟକୁ ପଠାଇଲେ ।

କଚ ଯାଇ ଶୁକ୍ରାଚାର୍ଯ୍ୟଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ ଓ ନିଜ ବ୍ୟବହାର ଦ୍ୱାରା ତାଙ୍କ ପ୍ରିୟପାତ୍ର ହେଲେ । ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀ ତାଙ୍କୁ ବହୁତ ଭଲ ପାଇଲେ । କିନ୍ତୁ ଅସୁରମାନେ କଚଙ୍କ ଉଦ୍ଦେଶ୍ୟ ଅନୁମାନ କରି ତାଙ୍କୁ ହତ୍ୟା କଲେ । ଶୁକ୍ରାଚାର୍ଯ୍ୟ ଏହା ଜାଣି ମନ୍ତ୍ର ସାହାଯ୍ୟରେ ତାଙ୍କୁ ବଞ୍ଚାଇ ଦେଲେ ।

ଅସୁରମାନେ ପୁଣି ଥରେ ତାଙ୍କୁ ହତ୍ୟା କରି, ଜଳାଇ, ତାଙ୍କ ପାଉଁଶ ଶୁକ୍ରାଚାର୍ଯ୍ୟଙ୍କ ପାନୀୟ ସହ ମିଶାଇ ଦେଲେ । ଶୁକ୍ରାଚାର୍ଯ୍ୟ ତାହା ପାନ କରି ଯେତେବେଳେ ଘଟଣା ବୁଝିଲେ, ସେତେବେଳେ ନିଜ ପେଟ ଭିତରେ ଥିବା କଚଙ୍କୁ ପ୍ରଥମେ ସଞ୍ଜୀବନୀ ମନ୍ତ୍ର ଶିଖାଇ ତା'ପରେ ତାଙ୍କୁ ବାହାରି ଆସିବାକୁ କହିଲେ । କଚ ତାଙ୍କ ପେଟ ଚିରି ବାହାରି ଆସି ନିଜେ ମନ୍ତ୍ର ପଢ଼ି ଗୁରୁଙ୍କୁ ବଞ୍ଚାଇ ଦେଲେ ।

ବର୍ତ୍ତମାନ ସେ ବିଦାୟ ନେବାକୁ ବାହାରନ୍ତେ ଦେବଯାନୀ ତାଙ୍କୁ ବିଭା ହେବାକୁ ପ୍ରସ୍ତାବ କଲେ । କିନ୍ତୁ ଏକେ ଗୁରୁ-କନ୍ୟା ଭଗ୍ନୀ ସଦୃଶ, ତା' ଉପରେ ପୁଣି କଚ ଶୁକ୍ରାଚାର୍ଯ୍ୟଙ୍କ ପେଟରୁ ବାହାରିଥିବାରୁ ଦେବଯାନୀଙ୍କ ସହୋଦର—ଏଇ ଯୁକ୍ତିରେ କଚ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କଲେ ।

କ୍ରୁଦ୍ଧା ଦେବଯାନୀ ଅଭିଶାପ ଦେଲେ, "ମୃତସଞ୍ଜୀବନୀ ମନ୍ତ୍ର ତମ ନିଜ ପାଇଁ କାମ ଦେବ ନାହିଁ !" ସେଥିରେ କଚଙ୍କର ଦୁଃଖ ନଥିଲା । ସେ ଅନ୍ୟମାନଙ୍କ ନିମନ୍ତେ ମନ୍ତ୍ର ଶିଖିଥିଲେ ।





# ଝିଅର ବିବେକ

ସିପ୍ରା ନଦୀ କୂଳରେ ଛୋଟ ଗାଁଟିଏ ଥାଏ। ନାମ ରତ୍ନପୁର। ଅନେକ ପୂର୍ବକାଳରୁ ସେ ଗାଁରେ ଗୋଟିଏ ମହାଦେବ ମନ୍ଦିର ଥାଏ। ଶିବରାତ୍ରୀ ବେଳେ ସେଠାରେ ଗୋଟାଏ ବଡ଼ ମେଳା ବସୁଥାଏ। ପ୍ରାୟ ଆଠ ଦଶଦିନ କାଳ ଗାଁ ଲୋକେ ନିଜ ନିଜ ସୁଖ ଦୁଃଖ ଭୁଲିଯାଇ ମେଳାରେ ମଶଗୁଲ୍ ରହୁଥାନ୍ତି। ଦୂର ଗାଁ ଗଣ୍ଡାରୁ ବହୁତ ଲୋକ ଆସୁଥାନ୍ତି। ସହରରୁ ବେପାରୀମାନେ ଆସି ମନ୍ଦିର ପାଖରେ ଦୋକାନ ବସାଉଥାନ୍ତି।

ଗଙ୍ଗାଧର ସେ ଗାଁରେ ଜଣେ ସାଧାରଣ ଗୃହସ୍ଥ। ସେ, ତା' ସ୍ତ୍ରୀ ଓ ଝିଅ କୁମୁଦିନୀ ମେଳାକୁ ଯାଇଥାନ୍ତି। ଘରେ ଅବଶ୍ୟ ସେମାନେ ତାଲା ପକାଇ ଯାଇଥାନ୍ତି, ତଥାପି ଗଙ୍ଗାଧର ମନରେ ଦକ ଥାଏ। ଗାଁର ସବୁ ଲୋକ ତ ମେଳାରେ; ଚୋର କାହାର ଘରେ ପଶି ସବୁ ନେଇଗଲେ ବି କେହି କିଛି କହିବାକୁ ନାହିଁ। ମେଳାରେ ଗୋଟାଏ ଯାତ୍ରାଭିନୟ ହେଉଥାଏ। କୁମୁଦିନୀ ଓ ତା' ବୋଉ ମୁଗ୍ଧ ହୋଇ ଯାତ୍ରା ଦେଖୁଥାନ୍ତି। ଗଙ୍ଗାଧରକୁ ସେ ଯାତ୍ରା ବିଶେଷ ଭଲ ଲାଗୁ ନଥାଏ। ସେ ତେଣୁ ସହଳ ଘରକୁ ଫେରି ଆସିଲା।

ଜହ୍ନ ଆଲୁଅରେ ସେ ଦେଖିଲା, ତା' ଘର ବାରନ୍ଦାରୁ ତଳକୁ ପିଲାଟାଏ ଡେଇଁପଡ଼ି ଚାଲି ଯାଉଛି। ଗଙ୍ଗାଧର ଦୌଡ଼ି ଯାଇ ତା' ଜାମା ଟାଣି ଧରିଲା। ଦେଖିଲା; ସେ ପିଲା ଅପରିଚିତ। ସେ ଯେ ଚୋର, ଏଥିରେ ଆଉ ତା'ର ସନ୍ଦେହ ରହିଲା ନାହିଁ।

ଚିତ୍କାର କରି ଗଙ୍ଗାଧର ପଚାରିଲା, "ହଇରେ ଟୋକା! କ'ଣ ଚୋରି କରିଛୁ?"

ସେ ପିଲାଟିର ମୁହଁରେ ବିକଳ ଭାବ ଫୁଟି ଉଠିଲା। ସେ କିଛି କହିଲା ନାହିଁ। ସେଥିରେ

ଗଙ୍ଗାଧରର ସନ୍ଦେହ ଦୃଢ଼ ହୋଇଗଲା । ସେ ପିଲାଟିର ପିଠିରେ ଗୋଟିଏ ଧକ୍କା ବସାଇ କହିଲା, "ମାନି ଯାଉଛୁ ନା ମାଡ଼ ଖାଇ ବେଦମ୍ ହେବୁ ?"

ତଥାପି ପିଲାଟି ମୁହଁରୁ କଥା ବାହାରିଲା ନାହିଁ । ଗଙ୍ଗାଧରର ପାଟି ଶୁଣି ଲୋକ ଜମିଗଲେ । ଜଣେ ବଡ଼ପାଟିଆ ଲୋକ ଭିଡ଼ ଠେଲି ଆଗକୁ ଆସି ପିଲା ଗାଲରେ ଗୋଟାଏ ଚଟକଣି ଥୋଇଲା ଓ ଧମକ ଦେଇ କହିଲା, "ନିଜକୁ ବୋକା ବୋଲି ଦେଖାଇଲେ କ'ଣ ଆମେ ଛାଡିଦେବା ? ଆମେମାନେ ଓଲୁ ବୋଲି ଭାବୁଛୁ ?" ସେ ଆହୁରି ଗୋଟାଏ ମାଡ଼ ବସାଇବାକୁ ଯାଉଥିଲା, ସେତେବେଳେ ଠିକ ଝିଅଟିଏ ବାହାରି ଆସି ତା' ହାତ ଧରି ପକାଇ କହିଲା, "ଆରେ ବାବୁ, ମାଡ଼ ଦେବା ପୂର୍ବରୁ ସେ କ'ଣ ଚୋରି କରିଛି, ସେତକ ଆଗେ ଦେଖ !" ସେ ଝିଅ ଆଉ କେହି ନୁହେଁ, କୁମୁଦିନୀ । ମା ଝିଅ କେତେବେଳେ ଆସି ଭିଡ଼ ପଛରେ ଠିଆ ହୋଇଥିଲେ ।

ସେଉଠୁ ପିଲାର ଲୁଗାପଟା ତଲାସ କରାହେଲା । ଦେଖିବା ବେଳକୁ ତା' ଜାମା ପକେଟରେ ଦୁଇ ଚାରି ପଇସା ମାତ୍ର ଅଛି । ଆଉ କିଛି ନାହିଁ । ସମସ୍ତେ ଆଶ୍ଚର୍ଯ୍ୟ ହେଲେ ।

"ଯଦି ଚୋରି ନ କରିଛୁ, ତେବେ କରିଛୁ କ'ଣ ? ଗଙ୍ଗାଧର ପଚାରିଲା ।

"ବାବୁ, କିଛି ନକହି ଚାଲିଯିବି ବୋଲି ଭାବିଥିଲି । କିନ୍ତୁ ଯେତେବେଳେ ଏତେ କଥା ହେଲାଣି, ମୋତେ ସବୁ କହିଦେବାକୁ ହେବ ।



ଶୁଣ ତେବେ । ବାରବର୍ଷ ତଳର କଥା । ମୁଁ ସେତେବେଳେ ଛଅବର୍ଷର ପିଲା । ମୋତେ କଠିନ ବେମାର ହୋଇଥାଏ । ମୋ ବାପା ବିଖ୍ୟାତ ବୈଦ୍ୟ ବଳଭଦ୍ର ଦାସଙ୍କୁ ଯାଇ ଭେଟିଲେ । ରୋଗର ଲକ୍ଷଣ ଶୁଣି ବୈଦ୍ୟ ଗୋଟିଏ ଅତି ମୂଲ୍ୟବାନ ଔଷଧ ତିଆରି କରିବେ ବୋଲି କହିଲେ । ସେଥିରେ ସ୍ୱର୍ଣ୍ଣ ଭସ୍ମ ଲାଗିବ । ସେ ବାପାଙ୍କୁ ଟିକିଏ ସୁନା ଆଣିବା ପାଇଁ କହିଲେ । ଆମେ ସେତେବେଳେ ଅତି ଗରିବ ଥିଲୁଁ । ବାପା ସୁନା କାହୁଁ ଆଣିବେ ? ସେ ହତାଶ ହୋଇ ଫେରୁଥିଲେ, ତାଙ୍କୁ ଶୋଷ ଲାଗିଲା । ସେ ଏହି ଘରେ ଆସି ପାଣି ମାଗିଲେ । ଆପଣହିଁ ତାଙ୍କୁ ପାଣି ଦେଇଥିବେ । ପାଣି ଗିଲାସ ଧରି ଆପଣ ଘର ଭିତରକୁ ପଶିଯିବା ବେଳକୁ ଆପଣଙ୍କ ଅଣ୍ଟିରୁ ଗୋଟିଏ ସୁନାମୁଦି ଖସି ପଡ଼ିଲା । ଆପଣ ବୋଧହୁଏ ତାହା ବଣିଆ ପାଖରୁ ନେଇ ଆସିଥିଲେ । ମୋତେ ମୃତ୍ୟୁ କବଳରୁ ରକ୍ଷା କରିବା ନିମନ୍ତେ ବାପା ନିଜ ବିବେକର ତାଡ଼ନା ସତ୍ତ୍ୱେ ସୁନା ମୁଦିଟି ଉଠାଇ ନେଇ ଚାଲିଗଲେ । ଔଷଧ ପ୍ରସ୍ତୁତ ହେଲା । ମୁଁ ସୁସ୍ଥ ହେଲି । ବାପା ବେପାର କରି କିଛି ଧନ ଅର୍ଜିଲେ । ମୃତ୍ୟୁ ବେଳକୁ କହିଗଲେ ଆପଣଙ୍କ ପାଖରେ ଯେମିତି ହେଲେ ପାଞ୍ଚଶହ ଟଙ୍କା ପହଞ୍ଚାଇ ଦେବାପାଇଁ । ସେଥିପାଇଁ ମୁଁ ଆସିଥିଲି ।”

ସେତେବେଳେ ଗୋଟିଏ ସୁନାମୁଦିର ଦାମ ମାତ୍ର କୋଡ଼ିଏ ତିରିଶ ଟଙ୍କା ଥିଲା । ପାଞ୍ଚଶହ





ଟଙ୍କା ଶୁଣି କେହି କେହି ହସିଲେ । କେହି କେହି କହିଲେ, "ଟୋକା ଘର ଚାଲାକ । ଗୋଟାଏ ଗଳ୍ପ ତିଆରି କରିଦେଲା ।"

ଗଙ୍ଗାଧର କହିଲା, "ସେକଥା ତ ବୁଝିଲି । ତେବେ ତୁ ପାଞ୍ଚଶହ ଟଙ୍କା ଦେବା ପରିବର୍ତ୍ତେ ଆମ ଘର ଭିତରେ ପଶିବାକୁ ଚେଷ୍ଟା କରୁଥିଲୁ କାହିଁକି ?"

"ବାବୁ, ଘର ଭିତରେ ପଶିବାକୁ କାହିଁକି ଚେଷ୍ଟା କରିବି ? ମୁଁ ଟଙ୍କା ଥଳିଟି ଝରକା ଭିତର ଦେଇ ପକାଇଦେଇ ଚାଲି ଯାଉଥିଲି !" ପିଲା କହିଲା ।

"ଏମିତି କଥା ?" କେହି ଜଣେ ଥଟ୍ଟା କରି କହିଲା । "ବର୍ତ୍ତମାନ ଘର ଭିତରୁ ଟଙ୍କା ଥଳି ନ ମିଳିଲେ ଟୋକା କହିବ କି ସେ ଗୋଟିକି କେହି ଜଣେ ଉଠାଇ ନେଇ ଯାଇଛି । ନା କ'ଣ ?" ଆଉ ଜଣେ କହିଲା ।

"ଆପଣମାନେ ମୋତେ ଏମିତି ଅବିଶ୍ୱାସ କରନ୍ତୁ ନାହିଁ । ମୁଁ ତ ଏଇଠି ଅଛି । ଆପଣମାନେ ଯାଇ ଦେଖନ୍ତୁ । ମୁଁ ମିଛ କହୁଥିଲେ ମୋତେ ଯାହା ଶାସ୍ତି ଦେବେ, ମୁଁ ମାନି ନେବି ।" ପିଲାଟି ଆଖି ପୋଛୁ କହିଲା ।

"ସତେ ? ଆଚ୍ଛା ଦେଖିବା ।" ଏହା କହି ଗଙ୍ଗାଧର ଘର ଖୋଲିଲା । ତା' ସଙ୍ଗେ ସଙ୍ଗେ ଗାଁର ଦୁଇ ତିନିଜଣ ମୁଖିଆ ଲୋକ ବି ଘର ଭିତରେ ପଶିଲେ । ଦେଖିବା ବେଳକୁ ସତରେ ଝରକା ତଳେ ଗୋଟିଏ ଥଳି ପଡ଼ିଛି । ସେମାନେ ଥଳି ଖୋଲି ଦେଖିଲେ, ତହିଁ ଭିତରେ ଟଙ୍କା ଅଛି—ପାଞ୍ଚଶହ ସରିକି ହେବ ।

ସମସ୍ତେ ହଠାତ୍ ନୀରବ ହୋଇଗଲେ । କାହାରି କାହାରି ମୁହଁରେ ଅନୁତାପର ଭାବ ଫୁଟି ଉଠିଲା । ସବୁଠାରୁ ବେଶି ଅନୁତପ୍ତ ହେଲା ଗଙ୍ଗାଧର । ସେ କହିଲା, "ବାସ୍ତବିକ, ସବୁ କଥା ନ ବୁଝି ଜଣକୁ ହଠାତ୍ ଚୋର ବୋଲି କହିବା ବଡ଼ ଅନ୍ୟାୟ ହୋଇଛି ।" ତା'ପରେ ସେ ପିଲାଟିକୁ କହିଲେ, "ଆଚ୍ଛା, ବାପା, ତମେ ଆମ ଘରକୁ ଆସ ।" କିନ୍ତୁ ସେତେବେଳକୁ ପିଲାଟି ଦୂରେଇ ଗଲାଣି । ତାକୁ ଆଉ କେହି ଅଟକାଇ ପାରିଲେ ନାହିଁ ।

ଲୋକେ ଯିଏ ଯାହା ବାଟରେ ଚାଲିଗଲେ । ଖାଲି ତା' ସ୍ତ୍ରୀ ଓ କୁମୁଦିନୀ ଆସି ସେଠାରେ ଠିଆ ହୋଇଥାନ୍ତି ।

ଗଙ୍ଗାଧର ହସି ଉଠି କହିଲା, "ଆଉ ଦୁଇଦିନ ପରେ କୁମୁଦିନୀର ଜନ୍ମଦିନ । ମୋର ବଡ଼ ଇଚ୍ଛାଥିଲା ତା' ଜନ୍ମଦିନ ଭଲ ଭାବରେ ପାଳନ କରିବି । କାରଣ ତାକୁ ଦଶବର୍ଷ ପୂରିବ । ଟଙ୍କା ମିଳିଗଲା । ଭଲ ହେଲା । କେବେ ମୋ ଅଣ୍ଠିରୁ ସୁନା ମୁଦି ଖସି ପଡ଼ିଥିଲା, ମନେ ନାହିଁ ।"

ହଠାତ୍ କୁମୁଦିନୀ ଟଙ୍କା ଥଳିଟି ଗଙ୍ଗାଧର ହାତରୁ ଛଡ଼ାଇ ନେଇ କହିଲା, "ବାପା, ଏ ଥଳି ତମର ନୁହେଁ ।"

ଗଙ୍ଗାଧର ଆଶ୍ଚର୍ଯ୍ୟ ହୋଇ ତାକୁ ଅନାଇଲା । ସେ ପୁଣି କହିଲା, "ବାପା ! ବାରବର୍ଷ ତଳେ ତମେ ଏ ଘରେ ନଥିଲ । ମୋ ଜନ୍ମର ବର୍ଷକ ପୂର୍ବରୁ ତମେ ଏ ଘର କିଣିଲ ବୋଲି ମୁଁ ଜାଣେ । ବାରବର୍ଷ ତଳେ ଏ ଘରର ମାଲିକ ଥିଲେ ରଘୁ ଜେଜେ । ସେ ବର୍ତ୍ତମାନ ବଡ଼ ଦୁସ୍ଥ ଅବସ୍ଥାରେ ଅଛନ୍ତି । ମୁଁ ଯାଉଛି, ଏ ଟଙ୍କାଥଳି ତାଙ୍କୁ ଦେବି ।" କୁମୁଦିନୀ ଚାଲିଯିବାକୁ ଉଦ୍ୟତ ହେଲା ।

"ଆରେ ଝିଅ, ତୋ ଜନ୍ମଦିନ···"

"ବାପା ! ରଘୁ ଜେଜେଙ୍କ ଶୁଭେଚ୍ଛା ଓ ଆଶୀର୍ବାଦ କ'ଣ ମୋ ଜନ୍ମଦିନ ପାଇଁ ବଡ଼ କଥା ନୁହେଁ ? ଖାଲି ଗୁଡ଼ିଏ ଲୋକଙ୍କୁ ଭୋଜି ଦେଇଦେଲେ କ'ଣ ହେବ ?" କୁମୁଦିନୀ ବାପାଙ୍କ ମୁହଁକୁ ଅନାଇ ରହିଲା । ଯେମିତି ସେ ଗଙ୍ଗାଧର ମୁହଁରେ ପ୍ରଶଂସାର ଭାବ ଲକ୍ଷ୍ୟ କରିଛି, ସେମିତି ସେ ହସି ହସି ଦୌଡ଼ି ଚାଲିଗଲା ରଘୁ ଜେଜେଙ୍କ ଘରଆଡ଼େ ।

"ମୋ ଝିଅର ବିବେକ ଆମଠାରୁ କେଡ଼େ ମହତ୍ !" ଗଙ୍ଗାଧର କହିଲା ।

"ସେ ମୋର ବି ଝିଅଟି ? ମୋ ବିବେକ କ'ଣ କମ୍ ମହତ୍ ?" ହସି ଦେଇ କହିଲା କୁମୁଦିନୀର ବୋଉ ।





# ବୀର ହରିହର

ଶଙ୍ଖେଶ୍ୱରର ମହେନ୍ଦ୍ର ସିଂହ ଥିଲେ ଜଣେ ବଡ଼ ଜମିଦାର । ତାଙ୍କ ପୈତୃକ ଜମିଦାରି ଶଙ୍ଖେଶ୍ୱରଠୁଁ କିଛି ଦୂରରେ ସେ ଆଉ ଖଣ୍ଡିଏ ଜମିଦାରି କିଣିଥିଲେ । ସେଠାକାର ପ୍ରଜାମାନେ ଠିକ୍ ସମୟରେ ଆସି କଚେରିରେ କର ଦାଖଲ୍ ନ କରିବାରୁ ଜମିଦାରଙ୍କୁ ତାଙ୍କ ଗୁମାସ୍ତା କହିଲେ, "ସେମାନଙ୍କୁ ତାଗିଦ୍ ନ ଦେଲେ ସେମାନେ କର ଦେବେ ନାହିଁ ।

"ତେବେ କ'ଣ କରାଯିବ ?" ଜମିଦାର ପଚାରିଲେ ।

"ମୁଁ ନିଜେ ଲୋକ ନେଇ ଯାଏଁ । ଟଙ୍କା ଅସୁଲ୍ କରି ଆଣିବ ।" ଗୁମାସ୍ତା କହିଲେ ।

ଜମିଦାର ଏ ପରାମର୍ଶ ଠିକ୍ ବୋଲି ବୁଝିଲେ । ଚାରିଜଣ ବିଶ୍ୱସ୍ତ ଲୋକଙ୍କୁ ଧରି ଗୁମାସ୍ତା ବାହାରି ଗଲେ ।

ଦୂରବର୍ତ୍ତୀ ଜମିଦାରିରେ ସେମାନେ ତିନିଦିନ ରହି ସବୁ ଖଜଣା ଅସୁଲ କଲେ । ଚତୁର୍ଥ ଦିନ ସେମାନେ ଶଙ୍ଖେଶ୍ୱର ଅଭିମୁଖେ ବାହାରିଲେ । ଗୁମାସ୍ତା ଆଗେ ଆଗେ ଧିରେ ଧିରେ ଘୋଡ଼ାରେ ଚାଲିଥାନ୍ତି । ଚାରି ଚାକର ଟଙ୍କା ଥଳିମାନ ପିଠିରେ ପକାଇ ତାଙ୍କୁ ଅନୁସରଣ କରୁଥାନ୍ତି ।

କିନ୍ତୁ ବାଟରେ ଭୀଷଣ ଝଡ଼ ବର୍ଷା ହେଲା । ସେମାନେ ଗୋଟାଏ ଦୋକାନ ପିଣ୍ଡାରେ ଅନେକ ସମୟ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ବାଧ୍ୟ ହେଲେ । ବର୍ଷା ଛାଡ଼ିଯିବା ପରେ ସେମାନେ ପୁଣି ବାହାରି ପଡ଼ିଲେ ।

ସନ୍ଧ୍ୟା ହେବା ବେଳକୁ ସେମାନେ ଭଲ ବାଟକୁ ଆସି ଯାଇଥାନ୍ତି, କିନ୍ତୁ ଶଙ୍ଖେଶ୍ୱରରେ ମଝିରାତି ପୂର୍ବରୁ ପହଞ୍ଚିବାର ଆଶା ନଥାଏ । ଚାକରମାନେ ଗୋଟିଏ ବରଗଛ ମୂଳରେ

ବସି ପଡ଼ିଲେ ଓ ଗୁମାସ୍ତାଙ୍କୁ କହିଲେ, "ବାବୁ, ଆଉ ଆଜି ବାଟ ଚାଲିବା ଆମ ପକ୍ଷରେ ସମ୍ଭବ ନୁହେଁ । ଆମେ ଏଇଠି ରୋଷେଇବାସ କରି ଖାଇବୁଁ ଓ ଶୋଇପିବୁଁ । ଆପଣ ଯା'ନ୍ତୁ ।"

ଗୁମାସ୍ତା କହିଲେ, "ଠିକ୍ ଅଛି । କିନ୍ତୁ ସତର୍କ ରହିବ । ତିନିଜଣ ଶୋଇଲେ ଜଣେ ଚେଇଁଥିବ ।" ଏହା କହି ସେ ଚାଲିଗଲେ ।

ରୋଷେଇ କରି ଖାଇପିଇ ସାରି ଚାରି ଟଙ୍କା ଥଳିକୁ ରଖି ତା' ଚାରିକଡ଼େ ଚାରିଜଣ ଶୋଇଲେ । କାହାକୁ ନିଦ ଆସି ନଥାଏ; ହଠାତ୍ ସେମାନେ କେହି ଜଣେ ନାକୁଆ ସ୍ୱରରେ କହିବାର ଶୁଣିଲେ, "ତମମାନଙ୍କ ବହପ ତ କମ୍ ନୁହେଁ ଦେଖୁଛି! ମୋ ଗଛତଳେ ଆସି ମନଇଚ୍ଛା ରୋଷେଇ କରି ଖାଇବ ଅଥଚ ମୋ ପାଇଁ କିଛି ରଖିବ ନାହିଁ! ପୁଣି ଆରାମରେ ଶୋଇବ! ଆରେଃ!"

ସେମାନେ ଉପରକୁ ଅନାଇଲେ । ଦେଖିବା ବେଳକୁ କିଏ ଗୋଟାଏ ବିକଟାଳ ରୂପରେ ସେମାନଙ୍କୁ ଅନାଇଛି । ତା ଆଖି ଯୋଡ଼ିକ ଜଳୁଛି । ସାପ ଭଳି ଲମ୍ବ ତା' ଗୋଡ଼ ଦୁଇଟି ଝୁଲି ପଡ଼ିଛି । ସେ ତଳକୁ ଓହ୍ଲାଉଛି ।

ଚିତ୍କାର କରି ସେମାନେ ଟଙ୍କା ଥଳିତକ ଛାଡ଼ି ଦୌଡ଼ି ପଳାଇଲେ । ସେମାନେ ଶଙ୍ଖେଶ୍ୱରରେ ପହଞ୍ଚିବା ବେଳକୁ ରାତି ଅଧ । ଗୁମାସ୍ତାଙ୍କ ଘର କବାଟରେ ବାଡ଼େଇ ତାଙ୍କୁ ସେମାନେ ନିଦରୁ ଉଠାଇଲେ ଓ ସବୁ କହିଲେ ।



ଗୁମାସ୍ତା ସେମାନଙ୍କୁ ଲକ୍ଷ୍ୟ କରି କହିଲେ
"ତିନିଜଣଙ୍କୁ ତ ଦେଖୁଛି, ଆଉ ଜଣେ ?"

ସେତେବେଳେ ତିନିଜଣ ବୁଝିଲେ
ସେମାନଙ୍କ ସାଙ୍ଗ ହରିହରକୁ ଛାଡ଼ି ସେମା
ପଳାଇ ଆସିଛନ୍ତି ।

"ତମେ ତିନିଟା ଏଡ଼େ ମୂଢ଼! ପଳା
ଆସିଲ ତ ଆସିଲ, ତାକୁ ଛାଡ଼ି ଆସିଲ କିପରି ?
ଗୁମାସ୍ତା ସେମାନଙ୍କ ଉପରେ ବିରକ୍ତ ହୋ
ଏ ବିଷୟରେ ଜମିଦାରଙ୍କୁ ଯାଇ ଖବ
ଦେଲେ । ଜମିଦାର ଓ ଗୁମାସ୍ତା ସଙ୍ଗେ ସ
ଦୁଇ ଚାରିଜଣ ପ୍ରହରୀଙ୍କୁ ଧରି ସେ ଗଛ ଆ
ଚାଲିଲେ । ସେମାନେ ସେଠାରେ ପହଞ୍ଚିବ
ବେଳକୁ ଭୋର ହୋଇ ଆସିଲାଣି । ସେମା

ଲକ୍ଷ୍ୟ କଲେ, ହରିହର ଟଙ୍କାଥଳି ସବୁକୁ ଆବୋରି ବସିଛି । ଧିରେ ସେ ମୁଣ୍ଡ ତୋଳିଲା ।

"ସାବାସ୍, ହରିହର, ସାବାସ୍! ତୋ ଭଳି ସାହସୀ ପରିଚାରକ ପାଇ ମୁଁ ଗର୍ବିତ । ଅନ୍ୟ ତିନିଜଣ ଭୂତ ଦେଖି ପ୍ରାଣମୂର୍ଚ୍ଛା ଦୌଡ଼ିଲେ । ତୁ ଏକା ଟଙ୍କାତକ ଜଗି ବସି ରହିଲୁ । ଏହା କ'ଣ କମ୍ କଥା?" ଜମିଦାର କହିଲେ ।

ଗୁମାସ୍ତା ବି କହିଲେ, "ହରିହର ଭିତରେ ଏଭଳି ସାହସ ଓ କର୍ତ୍ତବ୍ୟପରାୟଣତା ଲୁଚି ରହିଛି ବୋଲି ମୁଁ ବି ଜାଣି ନଥିଲି ।"

ଜମିଦାର ଓ ଗୁମାସ୍ତା ଘୋଡ଼ାରେ ଚଢ଼ି ଚାଲିଗଲେ । ହରିହର ଅନ୍ୟମାନଙ୍କ ସହ ଚାଲି ଚାଲି ଯାଇ ଶଙ୍ଖେଶ୍ୱରରେ ପହଞ୍ଚିବା ବେଳକୁ ତା' ସାହସ କଥା ଚାରିଆଡ଼େ ପ୍ରଚାର ହୋଇ ଗଲାଣି । ଲୋକେ ତାକୁ କେତେ ଅଭିବାଦନ ଜଣାଇଲେ । ସେ ସିଧା ଘରକୁ ଗଲା । ସେଠି ଦେଖିଲା, ଜମିଦାର ତା' ସ୍ତ୍ରୀ ପାଖକୁ ପାଞ୍ଚଶହ ଟଙ୍କା ପୁରସ୍କାର ପଠାଇ ଦେଇଛନ୍ତି!

ସ୍ତ୍ରୀ ତାକୁ କଣ୍ଠସ୍ୱର ନିମ୍ନ କରି ପଚାରିଲା, "କଥା କ'ଣ କହିଲ? ତମେ ମୂର୍ଚ୍ଛା ଯାଇଥିଲ କି?"

"ଆଉ କ'ଣ ହେବେ? ସେ ଭୂତକୁ ଦେଖି ମୋ ଗୋଡ଼ ଚଳିଲା ନାହିଁ । ଯେତେବେଳେ ସେ ଓହ୍ଲାଇବାର ଦେଖିଲି, ସେତେବେଳେ ମୁଁ ଚେତା ହରାଇଲି । ଘୋର ବେଳକୁ ଜମିଦାର ଓ ଅନ୍ୟମାନଙ୍କ କଥାବାର୍ତ୍ତା ଶୁଣି ମୋ ନିଦ ଭାଙ୍ଗିଲା ।"

"ମୁଁ 'ସେଇଆ ଅନୁମାନ କରିଥିଲି । ଶୁଣ । ଭୂତ, ତମେ ଓ ମୋ ଛଡ଼ା ଆଉ କେହି ଅସଲ କଥା ଜାଣନ୍ତି ନାହିଁ । ତମେ ବି ଆଉ କାହାକୁ କହିବା ଦରକାର ନାହିଁ । ବୁଝିଲ?" ସ୍ତ୍ରୀ ହସି ହସି କହିଲା ।

ହରିହରକୁ ସେହି ଦିନରୁ ସମସ୍ତେ ବୀର ହରିହର ବୋଲି ଡାକନ୍ତି । ଜମିଦାର ଦେଇଥିବା ପୁରସ୍କାର ଟଙ୍କାରେ ସେ ଗୋଟିଏ ଦୋକାନ କଲା ଓ ଉନ୍ନତି କଲା ।






[୩]

[ଚିତ୍ରସେନ ଆକସ୍ମିକ ଭାବରେ ବଣ ଭିତରେ ଗୋଟିଏ ଅଜବ ଉଆସର ଅଧିକାରୀ ହେଲେ । ତାଙ୍କ ପିତା ମହାରାଜା ତାରକେଶ୍ୱର ସେ ସମ୍ବାଦ ପାଇ ସେଠାକୁ ଆସି ତାଙ୍କ ସହ ସାକ୍ଷାତ୍ କଲେ । କେବେ କୌଣସି ପ୍ରକାର ଦରକାର ପଡ଼ିଲେ ତତ୍‌କ୍ଷଣାତ୍ ତାଙ୍କୁ ଖବର ଦେବାକୁ ପରାମର୍ଶ ଦେଇ ସେ ବିଦାୟ ନେଲେ । ତା'ପରେ—]

ପିତା ମହାରାଜ ତାରକେଶ୍ୱରଙ୍କୁ ବିଦାୟ ଦେଇ ଚିତ୍ରସେନ ନିଜ ମନ୍ତ୍ରୀମାନଙ୍କ ସହ ପ୍ରାସାଦକୁ ଫେରି ଆସି ଦେଖନ୍ତି ତ ପ୍ରାସାଦ ଆଗରେ ଅନେକ ଲୋକ ଭିଡ଼ ଜମାଇଛନ୍ତି ।

ପ୍ରଥମେ ସେ ଭାବିଲେ ସେମାନେ ତାଙ୍କୁ କେବଳ ଅଭିନନ୍ଦନ ଜଣାଇବାକୁ ଆସିଛନ୍ତି । ଗର୍ବରେ ତାଙ୍କ ଛାତି ଫୁଲି ଉଠିଲା । ଦୁଇ ତିନିଦିନ ଭିତରେ ଜୀବନରେ କେତେ କାହିଁ ପରିବର୍ତ୍ତନ ହୋଇଗଲା ସତେ! ସେ କେବେ ଏଭଳି ଅଦ୍ଭୁତ ଘଟଣାମାନ କଳ୍ପନା ବି କରିପାରି ନଥାନ୍ତେ! କିନ୍ତୁ ପାଖକୁ ଯାଇ ସେ ଲକ୍ଷ୍ୟ କଲେ ଲୋକେ ବିମର୍ଷ ଦେଖା ଯାଉଛନ୍ତି । ସେ କାରଣ କ'ଣ ବୁଝି ପାରିଲେ ନାହିଁ । ସେମାନେ ତାଙ୍କୁ ଦେଖିବା ମାତ୍ରେ ଉଚ୍ଚ କଣ୍ଠରେ



କହିଲେ, "ମହାରାଜ! ଆମକୁ ରକ୍ଷା କରନ୍ତୁ! ଏ ବଣରେ ଯେଉଁ ରାକ୍ଷସ ଉଗ୍ରାକ୍ଷ ରହୁଛି, ସେ ଅତ୍ୟନ୍ତ ନିର୍ମମ। ଏ ପର୍ଯ୍ୟନ୍ତ ତା' ଅନୁଚରମାନେ ଆମମାନଙ୍କ ପାଳିତ ପଶୁମାନଙ୍କୁ ଧରିନେଇ ଯାଉଥିଲେ। ଏବେ ମଣିଷମାନଙ୍କୁ ନେଇ ଯାଉଛନ୍ତି।"

ରାକ୍ଷସ ଉଗ୍ରାକ୍ଷର ନାମ ଶୁଣିବା ମାତ୍ରେ ପ୍ରଥମେ ଚନ୍ଦ୍ରସେନ ଡରିଗଲେ। ପରେ ପରେ ସେ ନିଜକୁ କହିଲେ କି ଏଣିକି ସେ ଆଉ ରାଜକୁମାର ମାତ୍ର ହୋଇ ନାହାନ୍ତି; ସେ ଜଣେ ରାଜା। ତାଙ୍କର ପାତ୍ର ମିତ୍ର ମନ୍ତ୍ରୀ, ସବୁ ଅଛନ୍ତି। ସେନାବାହିନୀ ରହିଛି। ରାଜକୋଷରେ ଧନରତ୍ନର ଅଭାବ ନାହିଁ। ପ୍ରଜାମାନେ ବି ସ୍ୱଚ୍ଛନ୍ଦରେ ଚଳୁଛନ୍ତି। ସେ ଡରିବେ କାହିଁକି? ପ୍ରଜାଙ୍କୁ ଯିଏ ହରକତ କରିବ, ସିଏ ମଣିଷ ହେଉ ବା ରାକ୍ଷସ ହେଉ, ତା'ର ପ୍ରତିରୋଧ କରିବା ତାଙ୍କର କର୍ତ୍ତବ୍ୟ। ଚନ୍ଦ୍ରସେନ ପ୍ରଜାମାନଙ୍କୁ ପ୍ରଶ୍ନ କଲେ, "ତମ ପାଳିତ ପଶୁମାନଙ୍କୁ ବା ତମ ବସତିରୁ ମଣିଷଙ୍କୁ ଯିଏ ଧରି ନେଇଯାଉଛି, ସିଏ ଉଗ୍ରାକ୍ଷ ବୋଲି ଜାଣିଲ କିପରି?"

ତାଙ୍କ ପ୍ରଶ୍ନ ଶୁଣି ଲୋକଙ୍କ ଭିତରେ ଗୁଞ୍ଜରଣ ଉଠିଲା। ସେମାନଙ୍କ ନେତୃସ୍ଥାନୀୟ ଜଣେ ବ୍ୟକ୍ତି ଆଗକୁ ଆସି କହିଲା, "ମହାରାଜ! ଉଗ୍ରାକ୍ଷ ବା ତା' ଅନୁଚରମାନେ ଆମ ଗୃହପାଳିତ ପଶୁଙ୍କୁ ଉଠାଇ ନେଇଯିବାର ଆମେ ଦେଖିଛୁଁ। ମଣିଷଙ୍କୁ ନେଇଯିବା ବେଳେ ଆମେ ଦେଖିନାହୁଁ ସତ, କିନ୍ତୁ ରାକ୍ଷସ ଛଡ଼ା ମଣିଷଙ୍କୁ ନେଇଯିବ କିଏ?"

"ଉଗ୍ରାକ୍ଷ ବା ତା' ଅନୁଚର ଭଳି ଦିଶୁଥିବା କୌଣସି ରାକ୍ଷସ କୌଣସି ମଣିଷକୁ ଉଠାଇ ନେଇ ଗଲାବେଳେ ତମମାନଙ୍କ ଭିତରୁ କେହି ଦେଖିଛି କି? କିମ୍ବା କୌଣସି ଲୋକ ରାକ୍ଷସ କବଳରୁ ଖସି ଆସି ତମମାନଙ୍କୁ ତା' ଦୁର୍ଦ୍ଦଶା କଥା କହିଛି କି?" ଚନ୍ଦ୍ରସେନ ପୁଣି ପଚାରିଲେ।

ଲୋକେ ନୀରବ ରହିଲେ। ସେମାନଙ୍କ ମୁଖପାତ୍ର ପୁଣି କହିଲା, "ମହାରାଜ! ଉଗ୍ରାକ୍ଷର ଅନୁଚରମାନେ ମୋ ନିଜ ଛେଳିକୁ ନେଇ ଯାଉଥିବାର ମୁଁ ଦେଖିଛି। ତେବେ, ସତକଥା

କହିଲେ, କୌଣସି ମଣିଷକୁ ସେମାନେ ନେବାର ଆମେ ଦେଖିନାହୁଁ । ତେବେ ରାକ୍ଷସ ଛଡ଼ା ଆଉ କିଏ ବା ଏ କାମ କରିବ? ଆପଣ ନିଶ୍ଚିତ ହୁଅନ୍ତୁ, ଏହା ତାହାରି କାମ ।"

ଚନ୍ଦସେନ ଏ ଯୁକ୍ତିରେ ସନ୍ତୁଷ୍ଟ ହୋଇ ପାରିଲେ ନାହିଁ । ପାଳିତ ପଶୁଙ୍କୁ ଉଗ୍ରାକ୍ଷ ବା ତା' ଅନୁଚରମାନେ ନେଇ ଯାଉଥିଲେ ବୋଲି ତାଙ୍କର ବିଶ୍ୱାସ ଦୃଢ଼ ହୋଇଥିଲା, କିନ୍ତୁ ମଣିଷଙ୍କୁ କିଏ ନେଇ ଯାଉଛି, ତାହା ସେ ବୁଝିପାରୁ ନଥିଲେ ।



ତେବେ ସେ ନିଜ ସନ୍ଦେହ ପ୍ରକଟ ନ କରି କହିଲେ, "ଆଚ୍ଛା, ଆପଣମାନେ ଚିନ୍ତା କରନ୍ତୁ ନାହିଁ । ଘରକୁ ଯାନ୍ତୁ । ମୁଁ ଯଥାଶୀଘ୍ର ଉଗ୍ରାକ୍ଷ ଓ ତା' ଅନୁଚରମାନଙ୍କୁ ନିୟନ୍ତ୍ରଣକୁ ଆଣିବାର ଚେଷ୍ଟା କରିବି ।"

ଚନ୍ଦସେନଙ୍କ ଉତ୍ତର ଶୁଣି ତାଙ୍କ ପ୍ରଧାନ ମନ୍ତ୍ରୀ ଇତୀନ୍ଦ୍ର, ଚିନ୍ତାରେ ପଡ଼ିଲେ । ସେ ଚନ୍ଦସେନଙ୍କ ପାଖକୁ ଆସି କହିଲେ, "ମହାରାଜ, ଉଗ୍ରାକ୍ଷ ବଡ଼ ଭୀଷଣ ରାକ୍ଷସ ବୋଲି ଶୁଣିଛି ।"

ପ୍ରାସାଦ ଆଡ଼କୁ ଗୋଡ଼ ବଢ଼ାଇ ଚନ୍ଦସେନ କହିଲେ, "ମନ୍ତ୍ରୀବର! ସେ ଭୟଙ୍କର ରାକ୍ଷସ ହୋଇପାରେ । ତା' ବୋଲି କ'ଣ ଆମେ ପ୍ରଜାଙ୍କ ଅଭିଯୋଗ ପାଇବା ପରେ ମଧ୍ୟ ତା' ଅନ୍ୟାୟ ପ୍ରତି ଆଖି ବୁଜି ରହିବା? ସେନାପତି ଶକ୍ତିସିଂହ କାହାନ୍ତି?"

ସେନାପତି ପଛେ ପଛେ ଚାଲିଥିଲେ । ଆଗକୁ ଆସି କହିଲେ, "ମହାରାଜ, ଆଜ୍ଞା କ'ଣ?"

"ସେନାପତି! ତୁମ ସୈନ୍ୟଦଳର ଅବସ୍ଥା କିପରି? ସେମାନେ ଯଥେଷ୍ଟ ସାହସୀ ଓ ଯୁଦ୍ଧ-ନିପୁଣ ତ?" ଚନ୍ଦସେନ ପଚାରିଲେ ।

ସେନାପତି ଏ ପ୍ରଶ୍ନରେ ଅଶ୍ୱସ୍ତି ଅନୁଭବ କଲେ । ସେ କହିଲେ, "ମହାରାଜ! ଆମ ସୈନ୍ୟମାନଙ୍କ ବିଷୟରେ ମୁଁ ସେନାପତି ହୋଇ ବା କ'ଣ କହିବି! ଆପଣ ସେମାନଙ୍କୁ ଆଦେଶ ଦେଇ ଦେଖି ପାରନ୍ତି । ଆଦେଶ ପାଇଲେ ସେମାନେ ଏ ପର୍ବତମାଳ ଚୂର୍ଣ୍ଣ କରିଦେବେ ।"

ଚନ୍ଦ୍ରସେନ ହସିଲେ । "ସେନାପତି ! ପର୍ବତକୁ ଚୂନା କରିବାକୁ ଆରମ୍ଭ କଲେ ପର୍ବତ ବାଧା ଦେବ ନାହିଁ । ସେ କାମ ଯିଏ ହେଲେ ବି କରି ପାରିବ । ତୁମ ସୈନ୍ୟମାନେ ରାକ୍ଷସକୁ ସାମ୍ନା କରିବାକୁ ପ୍ରସ୍ତୁତ ଅଛନ୍ତି କି ?" ସେ ପଚାରିଲେ ।

"ଆପଣ କ'ଣ ରାକ୍ଷସ ଉଗ୍ରାକ୍ଷ କଥା କହୁଛନ୍ତି ? ସେ ରାକ୍ଷସ ବଡ଼ ଭୀଷଣ···" ସେନାପତି ବାକ୍ୟ ସଂପୂର୍ଣ୍ଣ କରି ପାରିଲେ ନାହିଁ । ସତେ ଅବା ତାଙ୍କ ପାଟି ଜାବ ପଡିଗଲା ।

ଚନ୍ଦ୍ରସେନ ପୁଣି ହସିଲେ ଓ କହିଲେ, "ଶକ୍ତିସିଂହ, ସେନାପତି ହୋଇ ତମେ ରାକ୍ଷସର ନାମ ପଡିବା ମାତ୍ରେ ଏମିତି ଡରିଗଲେ ଚଳିବ ? . ତମେ ଏମିତି ହେଲେ ସୈନ୍ୟମାନେ କେମିତି ହୋଇଥିବେ ? ଆଚ୍ଛା, ଆମ ସୈନ୍ୟ ଶିବିର କେଉଁଠି ?"

ସେନାପତି ଚନ୍ଦ୍ରସେନଙ୍କୁ ନେଇ ପ୍ରାସାଦର ପଶ୍ଚିମ ଭାଗର ଛାତ ଉପରକୁ ଉଠିଲେ । ତା'ପରେ ଆଗରେ ଗୋଟିଏ ପଥୁରିଆ ପଡ଼ିଆ ଆଡ଼କୁ ହାତ ଦେଖାଇ କହିଲେ, "ମହାରାଜ ! ସେଇଠି ଶିବିର ନିର୍ମାଣ ସକାଶେ କାମ ଚାଲିଛି । ସ୍ଥାନକୁ ସମତଳ କରାଯାଉଛି ।"

ପ୍ରାୟ ଦୁଇ ହଜାର ସରିକ ଲୋକ ଜଣ ବୁଦା ପରିଷ୍କାର କରି ଓ ପଥର ତାଡି ସ୍ଥାନଟି ଶିବିର ପାଇଁ ପ୍ରସ୍ତୁତ କରିବାରେ ଲାଗିଥିଲେ । ଖାଲି ପ୍ରାସାଦ ଓ ଧନଧାନ୍ୟ ନୁହେଁ, ତାଙ୍କର ବିରାଟ ସେନାଦଳ ଅଛନ୍ତି, ଏହା ବୁଝି ଚନ୍ଦ୍ରସେନ ବେଶ୍ ଗର୍ବ ଅନୁଭବ କଲେ । ଯେଉଁ ସିଂହ



ସାଧକଙ୍କ ଦୟାରୁ ସେ ହଠାତ୍ ଏ ସୌଭାଗ୍ୟର ଅଧିକାରୀ ହୋଇଥିଲେ, ତାଙ୍କ ଉଦ୍ଦେଶ୍ୟରେ ସେ ମନେ ମନେ କୃତଜ୍ଞତା ଜଣାଇଲେ ।

"ମହାରାଜ, ରାକ୍ଷସ ଉଗ୍ରାକ୍ଷ ବିରୁଦ୍ଧରେ ଅଭିଯାନ କରିବା ପୂର୍ବରୁ ଆମକୁ କେତୋଟି ବିଷୟରେ ଚିନ୍ତା କରିବାକୁ ହେବ ।" ସେନାପତି ଧୀର କଣ୍ଠରେ କହିଲେ ।

"ସେନାପତି ! ଉଗ୍ରାକ୍ଷ ବିରୁଦ୍ଧରେ ସୈନ୍ୟ ପ୍ରୟୋଗ କରିବାର ଉଦ୍ଦେଶ୍ୟ ମୋର ନାହିଁ । ମୁଁ ନିଜେ ଯାଇ ତା' ସହ କଥାବାର୍ତ୍ତା ହେବାକୁ ଚାହେଁ । ସେ କେଉଁଠାରେ ରହେ, ତମେ ତାହା ଜାଣିଛ ?" ଚନ୍ଦସେନ ପଚାରିଲେ ।

"ମହାରାଜ, ଗୁପ୍ତଚର ଲଗାଇ ତା'ର ନିବାସର ସନ୍ଧାନ ଆଣିଦେଇ ପାରିବ । କିନ୍ତୁ ଆପଣ କ'ଣ ଏକା ତା' ପାଖକୁ ଯିବେ ?"

"ସେନାପତି ! ସାଥିରେ କେତେଜଣ ସୈନିକ ନେଇଯିବା । ତମେ ନିଜେ ବି ମୋ ସହ ଆସିପାର ।"

ସେନାପତି ଶକ୍ତିସିଂହ କହିଲେ, "ଆପଣଙ୍କର ଯେପରି ଇଚ୍ଛା ! ଖାଲି ମୁଁ ନାହିଁକି, ଆମର ସମୁଦାୟ ସୈନ୍ୟ ଆପଣଙ୍କ ପାଇଁ ପ୍ରାଣପାତ କରିବାକୁ ପଛେଇବେ ନାହିଁ ।"

ରାକ୍ଷସର ଠିକଣା ଜଣାଥିବା ଗୁପ୍ତଚର ପାଖରେହିଁ ଥିଲେ । ଠିକଣା ବୁଝି ସେନାପତି ଓ କେତେଜଣ ସୈନିକ ଧରି ଚନ୍ଦସେନ ରାକ୍ଷସର ନିବାସ ଆଡ଼େ ଚାଲିଲେ । ସେମାନେ ସେ ଅଞ୍ଚଳରେ ପହଞ୍ଚିବା ବେଳକୁ ଦୁଇପହର





ହୋଇ ଯାଇଥାଏ । ସେତେବେଳେ ଉଗ୍ରାକ୍ଷର ଅନୁଚରମାନେ କେହି କେହି ଶୋଇଥିଲେ, କେହି କେହି ଦିବା ନିଦ୍ରା ପରେ ଉଠି ବସିଥିଲେ । ଚନ୍ଦ୍ରସେନଙ୍କ ଦଳ ଉପରେ ଆଖି ପଡ଼ିବାରୁ ସେମାନେ ପ୍ରଥମେ ଆଶ୍ଚର୍ଯ୍ୟ ହେଲେ ଓ ପରେ ଅଟ୍ଟହାସ୍ୟ କଲେ । ଜଣେ ଆଉ ଜଣଙ୍କୁ କହିଲା, "ଏମାନେ ତ ବହୁତ ବିବେକୀ ! ଆମ ଆହାର ହେବା ନିମନ୍ତେ ବଳେ ବଳେ ଆସି ଏଠି ପହଞ୍ଚି ଯାଇଛନ୍ତି !"

ସେମାନଙ୍କୁ ଅନାଇ ଚନ୍ଦ୍ରସେନ ଦୃଢ଼ କଣ୍ଠରେ କହିଲେ, "ଶୁଣ । ମୋ ନାମ ଚନ୍ଦ୍ରସେନ । ତମ ରାଜାଙ୍କୁ ଖବର ଦିଅ । ମୁଁ ତାଙ୍କ ସହ ଦେଖା କରିବାକୁ ଚାହେଁ ।"

ରାକ୍ଷସମାନେ ହସିଲେ । ଜଣେ କହିଲା, "ତାହିଁକି ? ସବୁ ମଣିଷଙ୍କ ମାଂସ କ'ଣ ଏକା ପ୍ରକାର ନୁହେଁ ? ତମ ମାଂସ କ'ଣ ଏତେ ସୁସ୍ୱାଦୁ ଯେ ଆମ ରାଜା ଖାଇବେ ? ତମେ ତ ବହୁତ ସୁନ୍ଦର ପୋଷାକ ପିନ୍ଧିଛ ! ତମେ କୌଣସି ରାଜା ନୁହଁ ତ ?"

"ହିଁ, ମୁଁ ରାଜା ଚନ୍ଦ୍ରସେନ । ଏଠାରୁ ପାଞ୍ଚ କ୍ରୋଶ ଦୂରରେ ମୋର ବିଶାଳ ପ୍ରାସାଦ । ଦେଖିନାହିଁ ? ବର୍ତ୍ତମାନ ବାଜେ କଥା ବନ୍ଦ କରି ରାକ୍ଷସରାଜ ଉଗ୍ରାକ୍ଷକୁ ଖବର ଦିଅ । ନହେଲେ ମଜା ଦେଖାଇବି ।"

ଚନ୍ଦ୍ରସେନଙ୍କର ଏଭଳି ଦମ୍ଭପୂର୍ଣ୍ଣ କଥା ଶୁଣି ରାକ୍ଷସମାନେ ହସ ବନ୍ଦ କଲେ । ଜଣେ କହିଲା, "ଓଃ, ଆପଣ ରଜା ! ଆମେ ଜାଣି ନଥିଲୁ । ଆମ ରାଜା ଉଗ୍ରାକ୍ଷ ଆପଣଙ୍କ ବିଷୟରେ ଆମକୁ ସବୁ କହିଛନ୍ତି । ଆପଣ ଆମକୁ ଆମର ଖାଦ୍ୟ ନେଇ ଯୋଗାଇ ଦେବେ, ସେକଥା ବି ଆମେ ଜାଣିଛୁଁ । ବସନ୍ତୁ । ଆମେ ଖବର ଦେଉଛୁଁ ।"

ଏହାପରେ ସେମାନେ ତାଙ୍କୁ ବାଟ କଢ଼ାଇ ନେଇଗଲେ । ଅଳ୍ପ ଦୂରରେ ଗୋଟିଏ ପାହାଡ଼ ଖୋଦାଇ କରି ଉଗ୍ରାକ୍ଷର ପ୍ରାସାଦ ନିର୍ମିତ ହୋଇଥାଏ । ତାହାର ନିର୍ମାଣ ଓ ଅବସ୍ଥିତି ଏପରି ଯେ କୌଣସି ସୈନ୍ୟବାହିନୀ ଯୁଦ୍ଧ କରି ତାକୁ ଅଧିକାର କରିବା ସମ୍ଭବପର ନୁହେଁ । ଅନ୍ୟ କୌଣସି ରାକ୍ଷସବାହିନୀ ମଧ୍ୟ



ତାଙ୍କୁ ଅଧିକାର କରି ପାରିବେ କି ନାହିଁ, ତାହା ସନ୍ଦେହର କଥା ।

ଚନ୍ଦ୍ରସେନ ବିସ୍ମିତ ଭାବରେ ସେ ଦୁର୍ଗ ନିରୀକ୍ଷଣ କରି ଅଗ୍ରସର ହେଲେ । ସେ ମୁଖ୍ୟ ଦ୍ୱାର ଅତିକ୍ରମ କରିବା ମାତ୍ରେ ଗୋଟାଏ ପ୍ରଚଣ୍ଡ ଅଟ୍ଟହାସ୍ୟ ଶୁଣିଲେ । ଆଗକୁ ବଢ଼ିଯାଇ ସେ ଦେଖିଲେ, ଉଗ୍ରାକ୍ଷ ଗୋଟିଏ ଉଚ୍ଚ ଶିଳା ଉପରେ ବସିଛି ।

"ଚନ୍ଦ୍ରସେନ ! କ'ଣ, ତମ ଜ୍ୟେଷ୍ଠ ପୁତ୍ରକୁ ନେଇ ଆସିଛ ?" ଏହା ପଚାରି ସେ ଚନ୍ଦ୍ରସେନଙ୍କ ଆଡ଼କୁ ଓ ତା'ପରେ ତାଙ୍କ ପଛରେ ଥିବା ଲୋକଙ୍କ ଆଡ଼କୁ କଟମଟ କରି ଅନାଇଲା ।

"ଉଗ୍ରାକ୍ଷ ! ତମର କ'ଣ ମତିଭ୍ରମ ହେଲାଣି ? ମାତ୍ର ଦୁଇଦିନ ତଳେ ତମ ସହ ମୋର କଥା ହୋଇଥିଲା । ଏହା ଭିତରେ କ'ଣ ଅଠର ବର୍ଷ ବିତିଗଲାଣି ବୋଲି ତମର ଧାରଣା ?" ଚନ୍ଦ୍ରସେନ ପ୍ରଶ୍ନ କଲେ ।

ଉଗ୍ରାକ୍ଷ ପୁଣି ଅଟ୍ଟହାସ୍ୟ କଲା ଓ କହିଲା, "ଚନ୍ଦ୍ରସେନ ! ରାକ୍ଷସର ମତି ଠିକ୍ ଥିବା ଅବସ୍ଥାରେ ବି ସେ ମଣିଷ ପ୍ରତି କେଡ଼େ ଭୟଙ୍କର ହୋଇ ପାରେ, ସେକଥା ସମସ୍ତେ ଜାଣନ୍ତି । ତା'ର ମତିଭ୍ରମ ହେଲେ ସେ କେଡ଼େ କ୍ଷତି ନ କରିବ ?"

"ଉଗ୍ରାକ୍ଷ ! ମୁଁ ସେହି ବିଷୟରେ ତମ ସହ କଥା ହେବାକୁ ଆସିଛି । ତମ ଅନୁଚରମାନେ ମୋ ପ୍ରଜାଙ୍କୁ ଧ୍ୱଂସ କରୁଛନ୍ତି !" ଚନ୍ଦ୍ରସେନ ଆକ୍ଷେପ କରି କହିଲେ ।

"ତମ ପ୍ରଜା ?" ଉଗ୍ରାକ୍ଷ ଟିକିଏ ଆଶ୍ଚର୍ଯ୍ୟ ହେଲା ଭଳି କହିଲା । ତା'ପରେ ପୁଣି କହିଲା, "ଅବଶ୍ୟ । ତମେ ସେପରି କହିପାର । ହଁ, କ'ଣ ହେଲଟି ?"

"ବଣ ଭିତରେ ଥିବା ଲୋକଙ୍କ ପଶୁମାନଙ୍କୁ ତଥା ମଣିଷଙ୍କୁ ବି ତମ ଅନୁଚରମାନେ ନେଇ ଆସୁଛନ୍ତି । ଏହା ଅନ୍ୟାୟ କାର୍ଯ୍ୟ ।" ଚନ୍ଦ୍ରସେନ କହିଲେ ।

ଉଗ୍ରାକ୍ଷ ଏହା ଶୁଣି ଗମ୍ଭୀର ଭାବରେ ବସି ରହିଲା । ଅଳ୍ପ ସମୟ ନୀରବ ରହି ସେ କହିଲା, "ଶୁଣ ଚନ୍ଦ୍ରସେନ । ତମ ଧାରଣା

ଭୁଲ । ମଣିଷମାନଙ୍କୁ ଯେଉଁମାନେ ଅପହରଣ କରୁଛନ୍ତି, ସେମାନେ ମୋ ଅନୁଚରେ ନୁହନ୍ତି ।"

ଚନ୍ଦସେନ ଉତ୍ତେଜିତ ଭାବରେ ପଚାରିଲେ, "ଉଗ୍ରାକ୍ଷ ! ତମେ କ'ଣ କହିବାକୁ ଚାହଁ ତମ ଅନୁଚରମାନେ ନିରୀହ, ସେମାନେ ମଣିଷ ଖା'ନ୍ତି ନାହିଁ ?"

"ମୁଁ ସେକଥା କହୁ ନାହିଁ । କେବେ କେବେ ପର୍ବ ବା ଉତ୍ସବରେ ରାକ୍ଷସମାନେ ମଣିଷ ଖାଇ ପକାନ୍ତି । ମଣିଷଙ୍କୁ ହଇରାଣ ହରକତ ବି କରନ୍ତି । କିନ୍ତୁ ବସ୍ତିରୁ ମଣିଷ ଅପହରଣ କରି ଆଣିବା ଆମର ଅଭ୍ୟାସ ନୁହେଁ । ଯେଉଁମାନେ ସେ କାମ କରୁଛନ୍ତି, ସେମାନେ ଆମଠୁଁ ବି ବଳି କ୍ରୁର ।" ଏହା କହି ଉଗ୍ରାକ୍ଷ ଟିକିଏ ଚୁପ୍ ରହିଲା ।

"କିଏ ତେବେ ସେମାନେ ?" ଚନ୍ଦସେନ ପଚାରିଲେ ।

"ଚନ୍ଦସେନ, ତମେ ଅଗ୍ନିଦ୍ୱୀପର ନାମ ଶୁଣିଛ ?" ଉଗ୍ରାକ୍ଷ ପଚାରିଲା ।

ଚନ୍ଦସେନ କିଛି ନ କହି ଉତ୍ସୁକ ହୋଇ ରାକ୍ଷସ ମୁହଁକୁ ଅନାଇ ରହିଲେ ।

ରାକ୍ଷସ ପୁଣି କହିଲା, "ଚନ୍ଦସେନ, ତମେ ଆଜି ରାତିକ ଏଠି ରହିଯାଅ । ଯେଉଁ କ୍ରୁର ଜୀବଙ୍କ କଥା କହୁଛି, ସେମାନେ ରାତିରେ ଭୀଷଣକାୟ ପକ୍ଷୀମାନଙ୍କ ଉପରେ ସବାର୍ ହୋଇ ଏ ମୁଲକକୁ ଆସନ୍ତି । ସେ ପକ୍ଷୀଙ୍କୁ ସାମ୍ନା କରିବା ଆମ ପକ୍ଷରେ ବି ସହଜ ନୁହେଁ । ଥରେ ସେମାନଙ୍କ ଭିତରୁ ଗୋଟାକୁ ଆମେ ଧରିଥିଲୁଁ । କିନ୍ତୁ ସେ ମରିଗଲା । ତା' କଙ୍କାଳ ଅଛି । ଦେଖିବାକୁ ଚାହଁ ?"

"ନା, ଉଗ୍ରାକ୍ଷ । କଙ୍କାଳ ଦେଖି ଲାଭ କ'ଣ ? ତମ ପରାମର୍ଶ ମାନି ବରଂ ରାତିରେ ଆମେ ଏଇଠି ରହିବୁଁ । ଆମକୁ ସେ ଭୀଷଣ ଆଗନ୍ତୁକମାନଙ୍କୁ ଦେଖାଇ ଦିଅ ।" ଚନ୍ଦସେନ କହିଲେ ।

ଉଗ୍ରାକ୍ଷ ମୁଣ୍ଡ ହଲାଇ ସମ୍ମତି ଦେଲା ।

(କ୍ରମଶଃ)





# ପରଶ ପଥର

ନିଶା ଗରଜୁଥାଏ । ଛୁହାଲୁ ଛୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ, ତାପରେ ଶବଟିକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମ ପ୍ରଚେଷ୍ଟାରେ ତମେ ବାରମ୍ବାର ଅସଫଳ ହେବା ସତ୍ତ୍ୱେ ଦମ୍ଭ ଛାଡୁନାହଁ । ଏହା ତମ ମତିଭ୍ରମର ଲକ୍ଷଣ

## ବେତାଳ କଥା



ନୁହେଁ ତ? ଥରେ ଥରେ ସାଧୁ ସନ୍ଥମାନଙ୍କର ବି ମତିଭ୍ରମ ହୋଇଥାଏ। ତମକୁ ଗୋଟାଏ ଦୃଷ୍ଟାନ୍ତ ଦେଉଛି। ମନଦେଇ ଶୁଣ; ଶୁଣିଲେ ଶ୍ରମଭାର ଲଘବ ମନେ ହେବ।

ବେତାଳ ଗପିଲା: ଅନେକ ଦିନ ତଳେ ବ୍ରହ୍ମପୁର ନଗରୀରେ ରହୁଥିଲେ ହରିଦାସ ଏବଂ କୁମରସିଂହ। ଦୁହେଁ ବେପାର କରି ବହୁତ ଉନ୍ନତି କରିଥିଲେ। ତେବେ ହରିଦାସ ସାଧୁ ସଚ୍ଚୋଟ ବ୍ୟବସାୟୀ ହିସାବରେ ସୁନାମ ଅର୍ଜନ କରିଥିଲା। ସେତିକି ନୁହେଁ, ସେ ନାନା ପ୍ରକାରେ ଲୋକଙ୍କର ବହୁତ ଉପକାର କରୁଥାଏ। ସହରର ଲୋକେ ତାକୁ ବହୁତ ଶ୍ରଦ୍ଧା କରୁଥିଲେ। ପର୍ବ ପର୍ବାଣୀରେ ତା' ଘରକୁ ଭେଟି ପଠାଉଥିଲେ; କୌଣସି ସମସ୍ୟା ଉପୁଜିଲେ ତା' ପରାମର୍ଶ ନେଉଥିଲେ।

କିନ୍ତୁ କୁମରସିଂହର ନାମ ପଡ଼ିଲେ ଲୋକେ ନାକ ଟେକୁଥିଲେ। କଥା ହେଲା, କୁମରସିଂହ ଅତ୍ୟନ୍ତ ଅସାଧୁ ପ୍ରକୃତିର ଲୋକ ଥିଲା। ସେ କଳେ ବଳେ କଉଶଳେ ଖାଲି ନିଜ ସମ୍ପଦ ବଢ଼ାଇ ଚାଲିଥିଲା। କାହାରି ଦୁଃଖ ସୁଖରେ ସେ ଭାଗ ନେଉ ନଥିଲା, କାହାରି ପ୍ରତି ଦିନେ ବି ସେ ସହାନୁଭୂତି ଦେଖାଉ ନଥିଲା। ସେ ଯେ ବେପାରରୁ ଆୟ କରୁଥିଲା, ତା'ର କାରଣ ତା' ବେପାର ତା' ନିଜ ସହର ଉପରେ ନିର୍ଭର କରୁ ନଥିଲା। ସେ ଦୂରବର୍ତ୍ତୀ ଗ୍ରାମ ଓ ସହରକୁ ନାନାଦି ପଦାର୍ଥ ପଠାଉଥାଏ। ଦୂର ସ୍ଥାନରେ ଥିବା ଲୋକେ ତା' ସ୍ୱଭାବ କଥା ବା ବୁଝିବେ କପରି?

ଟଙ୍କା ଆୟ କରି କୁମରସିଂହ ବେଶ୍ ଖୁସି ଥାଏ। କିନ୍ତୁ ତା'ର ବୁଢ଼ା ବାପା ବୀରସିଂହ ପୁଅର ମତିଗତିରେ ମୋଟେ ଖୁସି ହୋଇ ପାରୁ ନଥାଏ। ସେ କେତେଥର ପୁଅକୁ କହିଲା, "ଦେଖ, ଅନ୍ୟ ଲୋକଙ୍କୁ ଦୁଃଖ ଦେଇ ଯଦି ଟଙ୍କା ଉପାର୍ଜନ କରିବୁ, ତେବେ ସେଥିରେ ତୁ ସବୁଦିନ ସୁଖୀ ହୋଇ ପାରିବୁ ନାହିଁ। ସୁଖଶାନ୍ତି ବିନା ଖାଲି ଟଙ୍କା ଜମାଇ ଲାଭ କ'ଣ?"

କିନ୍ତୁ କୁମରସିଂହ ବାପା କଥାରେ କାନ ଦେଉ ନଥିଲା। ସେ କହୁଥାଏ, "ବାପା,

ତମେ ବୁଢ଼ା ହେଲଣି । ଖାଇ ପିଇ ହରିନାମ କରି ଶୋଇଥାଅ । ତମେ ଏତେ ବିଷୟରେ ମୁଣ୍ଡ ବୁଲାଇବା ଦରକାର କ'ଣ ? ମୁଁ ଯାହା କରୁଛି, ତାହା ବେପାର ବଣିଜ, ମହାଜନୀ କାରବାର । ସେସବୁର ନିୟମ ମାନି କରୁଛି । ସେସବୁର ନିୟମ ସହ ତମ ନୀତି ନିୟମ, ଧର୍ମକର୍ମର ସମ୍ପର୍କ ନାହିଁ ।"

"ପୁଅ, ତୁ ଭୁଲ କହୁଛୁ । ଧର୍ମ ବା ନୀତି ସହ ସମ୍ପର୍କ ନଥିବା କାମ ଜୀବନରେ କିଛି ନାହିଁ ।" ବୀରସିଂହ ଦୀର୍ଘନିଃଶ୍ୱାସ ଛାଡ଼ି କହେ । କୁମରସିଂହ ସେକଥା ଶୁଣି ନ ଶୁଣିଲା ପରି ରହେ ।

ଦିନେ ବୃଦ୍ଧ ବୀରସିଂହ ଜଣେ ମହାପୁରୁଷଙ୍କ ବିଷୟ ଶୁଣିଲା । ସେ ଗୋଟିଏ ବଣ ଭିତରେ ରହୁଥିଲେ । ଯେ କୌଣସି ଲୋକ ଉପରେ ସେ ମନ କଲେ ଅଦ୍ଭୁତ ପ୍ରଭାବ ବିସ୍ତାର କରି ପାରୁଥିଲେ । ବୀରସିଂହ ଯାଇ ତାଙ୍କ ପାଖରେ ପହଞ୍ଚିଲେ ଓ ତାଙ୍କୁ ନିଜ ମନୋବେଦନା ଜଣାଇଲେ ।

ମହାପୁରୁଷ କହିଲେ, "କୁମରସିଂହ ଯେ କେବଳ ନିଜେ ଅନ୍ୟାୟ କରୁଛି; ତାହା ନୁହେଁ, ଅନ୍ୟମାନଙ୍କୁ ଅନ୍ୟାୟ କରିବାକୁ ଶିଖାଉଛି ମଧ୍ୟ । କାରଣ ସେ ଅନ୍ୟାୟ ମାର୍ଗରେ ଧନ ଉପାର୍ଜନ କରିବାର ଦେଖି ଅନ୍ୟମାନେ ଭାବୁଛନ୍ତି ସେମାନେ ବି ସେହିପରି କଲେ ଚଳିବ । ଭଲ ଲୋକର ଉଦାହରଣ ଖୁବ୍ କମ୍ ଲୋକେ ଅନୁସରଣ କରନ୍ତି, କିନ୍ତୁ ଖରାପ ଲୋକଙ୍କ ଉଦାହରଣରେ ବେଶି ଲୋକ





ପ୍ରଭାବିତ ହୁଅନ୍ତି । ତୁ ଗୋଟିଏ କାମ କର! ତୋ ପୁଅକୁ ମୋ ପାଖକୁ ପଠାଇ ଦେ । ମୁଁ ତାକୁ ଭଲ ବାଟକୁ ଆଣିବା ନିମନ୍ତେ ଚେଷ୍ଟା କରିବି ।"

ବୀରସିଂହ ମହାପୁରୁଷଙ୍କୁ ବହୁତ ଧନ୍ୟବାଦ ଦେଇ ନିଜ ଘରକୁ ଲେଉଟି ଆସିଲା ଓ ପୁଅକୁ ତାଙ୍କ ପାଖକୁ ଯିବାକୁ କହିଲା । ମହାପୁରୁଷ ଅନେକ ଅଦ୍ଭୁତ କରିପାରନ୍ତି ଜାଣି କୁମରସିଂହ ତାଙ୍କ ପାଖକୁ ଯିବାକୁ ଖୁସିରେ ରାଜି ହେଲା ।

କୁମରସିଂହକୁ ଦେଖି ମହାପୁରୁଷ ପଚାରିଲେ, "କିରେ ବାପା, ତୋର କିଛି ମାଗୁଣି ଅଛି ?"

କୁମରସିଂହ ତରତରରେ କହିଲା, "ଆଜ୍ଞା ହଁ, ଅଛି । ଯଦି ଦେବେ, ତେବେ ଧନସମ୍ପତ୍ତି ଦିଅନ୍ତୁ ।"

ମହାପୁରୁଷ ହସିଲେ ଓ କହିଲେ, "ବେଶ୍ । ଉତ୍ତର ଦିଗରେ ଯେଉଁ ପାହାଡ଼ ଦିଶୁଛି, ତହିଁରେ ଅଛି ଗୋଟିଏ ଗୁମ୍ଫା । ସେ ଗୁମ୍ଫା ଭିତରେ ପରଶ ପଥର ମିଳିବ । ତାକୁ ତୁ ଯେ କୌଣସି ଧାତୁରେ ଲଗାଇ ଦେଲେ ସେ ଧାତୁ ସୁନା ହୋଇଯିବ ।"

"ସତେ ? ମୁଁ ଯାଉଛି । ଆଣିବି । ତାକୁ ଚିହ୍ନିବି କିପରି ?" ଆଗ୍ରହରେ କୁମରସିଂହ ପଚାରିଲା ।

"ତୁ ଏକା ଗଲେ କିଛି ଦେଖି ପାରିବୁ ନାହିଁ । ଯଦି ସାଥିରେ ଜଣେ ଅତ୍ୟନ୍ତ ସାଧୁ, ପରୋପକାରୀ ଲୋକକୁ ନେଇଯିବୁ, ତେବେ ପରଶ ପଥର ତୋ ଆଖିକୁ ଉଜ୍ଜ୍ୱଳ ଦିଶିବ ।"

କୁମରସିଂହ ମହାପୁରୁଷଙ୍କଠୁଁ ବିଦାୟ ନେଇ ଘରକୁ ଆସିଲା । ସାଧୁ ଓ ପରୋପକାରୀ ଲୋକ ହରିଦାସଠୁଁ ବା ବଳି କିଏ ଅଛି ? ସେ ହରିଦାସକୁ କହିଲା, "ଭାଇ, ଗୋଟିଏ ଗୁମ୍ଫାରେ ଠାକୁର ଅଛନ୍ତି । ସେଠାକୁ ଯାଇ ତାଙ୍କୁ ପ୍ରଣାମ କରି ଆସିବାକୁ ମୋତେ ଜଣେ ମହାପୁରୁଷ ନିର୍ଦ୍ଦେଶ ଦେଇଛନ୍ତି । ଏକା ଯିବାକୁ ଡର ଲାଗୁଛି । ତମେ ଯିବ ?"

ସର୍ବଦା ପରୋପକାର ପାଇଁ ପ୍ରସ୍ତୁତ ହରିଦାସ ମନା କରନ୍ତେ କିପରି ? ଦୁହେଁ

ନିବିଡ଼ ବଣ ଭିତରେ ଥିବା ଗୁମ୍ଫା ପାଖରେ ପହଞ୍ଚିଲେ । ଗୁମ୍ଫା ଭିତରେ କଟିମିଟି ଅନ୍ଧାର । ଦୁହେଁ ଯେମିତି ତହିଁ ଭିତରେ ପଶିଛନ୍ତି, ସେମିତି ଗୁମ୍ଫା ଦ୍ୱାର ଆପେ ଆପେ ଗୋଟିଏ ପଥର ଦ୍ୱାରା ବନ୍ଦ ହୋଇଗଲା । କିନ୍ତୁ ଗୁମ୍ଫା ଭିତରେ ଝୁଲିଥିବା କେତୋଟି ପଥରରୁ ଆଲୁଅ ବାହାରି ଗୁମ୍ଫାକୁ ଆଲୋକିତ କରି ରଖିଥାଏ । ସେହି ପଥର ସବୁ ପରଶ ପଥର ବୋଲି କୁମରସିଂହ ବୁଝିଲା । କିନ୍ତୁ ସେତିକିବେଳେ ଶୁଭିଲା ଭୀଷଣ ଅଟ୍ଟହାସ୍ୟ; ଦେଖାଦେଲା ଗୋଟିଏ ବିକଟ ମୂର୍ତ୍ତି ।

ଛନିଆରେ କୁମରସିଂହର ପାଟି ଖନି ପଡ଼ିଗଲା । ହରିଦାସ ଭଦ୍ର ଭାବରେ କହିଲେ, "ଦେଖନ୍ତୁ ମହାଶୟ, ମୋ ବନ୍ଧୁ ଏଠାକୁ ଠାକୁର ପୂଜିବାକୁ ଆସିଛନ୍ତି । ଆପଣ କିଏ ?"

ପୁଣି ଅଟ୍ଟହାସ୍ୟ କରି ସେ ବିକଟ ମୂର୍ତ୍ତି କହିଲା, "ଏଠି ଠାକୁର କାହିଁ ? ମୁଁ ଅଛି । ଆଉ ଅଛି ପରଶ ପଥର । ଖଣ୍ଡିଏ ପରଶ ପଥର ଯୋଗ୍ୟ ବ୍ୟକ୍ତିକୁ ଦେଲେ ମୋର ମୁକ୍ତି ହେବ ।"

ସଙ୍ଗେ ସଙ୍ଗେ କୁମରସିଂହର ପାଟି ଫିଟିଗଲା । ସେ କହିଲା, "ତେବେ ମୋତେ ଦିଅନ୍ତୁ ।"

ଅଟ୍ଟହାସ୍ୟ କରି ମୂର୍ତ୍ତି କହିଲା, "ତୁ ପୁଣି ଯୋଗ୍ୟ ? ତୁ ଜୀବନରେ କେତେ ପାପ କରିଛୁ ହିସାବ ରଖିଛୁ ? ହେଇତ ସେଦିନ ଜଣେ ବୁଢ଼ୀର ଘର ଖଣ୍ଡିକ ମାରି ନେଇଛୁ ! ମୁଁ ପରଶ ପଥର ହରିଦାସକୁ ଦେଇପାରେଁ ।"





"ହରିଦାସ କେଉଁ ଭଲ କାମ କରିଛି ?" କୁମରସିଂହ ଈର୍ଷାକାତର ହୋଇ ପଚାରିଲା ।

"କାହିଁକି ? ସେ ଅନାଥିନୀ ବୁଢ଼ୀକୁ ତ ପ୍ରଥମେ ସିଏ ଆଶ୍ରା ଦେଲା !" ବିକଟ ମୂର୍ତ୍ତି କହିଲା ।

"ସେମିତି ଦେଖିଲେ ସେ ବୁଢ଼ୀକୁ ତ ଜମିଦାର ଘର ଖଣ୍ଡିଏ ବି କରି ଦେଇଛନ୍ତି । ଜମିଦାର ତେବେ ହରିଦାସଠୁଁ ମହତ୍ ଲୋକ !" କୁମରସିଂହ କହିଲା ।

ହଠାତ୍ ହରିଦାସ କହିଲା, "ହଁ, ମହାଶୟ, ମୋ ବନ୍ଧୁ ଠିକ୍ କହୁଛନ୍ତି । ଜମିଦାର ବହୁତ ମହତ୍ ଲୋକ । ମୁଁ ଯାହା କରିଥିଲି ତାହା ଯେ କୌଣସି ଲୋକ କରନ୍ତା !"

ଏଥର ମୂର୍ତ୍ତି ଆଉ ବିକଟ ହସ ନ ହସି କହିଲା, "ଧନ୍ୟ ହେଲି !"

ହରିଦାସ ଓ କୁମରସିଂହ ଅନାଇ ଦେଖନ୍ତି ତ ସେ ଭୟଙ୍କର ମୂର୍ତ୍ତି ସ୍ଥାନରେ ଠିଆ ହୋଇଛି ଜଣେ ସୁନ୍ଦର ଗନ୍ଧର୍ବ । ସେ ହରିଦାସଙ୍କୁ ନମସ୍କାର କରି କହିଲା, "ନିଜ ସ୍ୱାର୍ଥ ହାନି ହେବା ସତ୍ତ୍ୱେ ଅନ୍ୟର ପ୍ରଶଂସା କରିବା ଭଳି ଜଣେ ମଣିଷର ବାକ୍ୟ ଶୁଣିବା ମାତ୍ରେ ମୋ ଉପରେ ଥିବା ଅଭିଶାପ କଟିଗଲା । ମୁଁ ପୁଣି ଗନ୍ଧର୍ବ ରୂପ ଫେରି ପାଇଲି । ଆପଣଙ୍କ ପ୍ରତି ମୁଁ ବିଶେଷ କୃତଜ୍ଞ ।"

ଏହାପରେ ଗନ୍ଧର୍ବ କୁମରସିଂହ ଆଡ଼କୁ ଅନାଇ କହିଲା, "ଆପଣଙ୍କ ପାଖରେ ମୁଁ ଋଣୀ ।" ଏହା କହି ସେ କୁମରସିଂହ ହାତକୁ ଖଣ୍ଡିଏ ପରଶ ପଥର ବଢ଼ାଇ ଦେଲା ଓ ଅଦୃଶ୍ୟ ହୋଇଗଲା ।

ଅନେକ ସମୟ ନୀରବରେ ଠିଆ ହୋଇ ରହି କୁମରସିଂହ ହରିଦାସକୁ କହିଲା, "ଭାଇ, ଏ ପଥର ତମର ପ୍ରାପ୍ୟ । ନିଅ ।"

କିନ୍ତୁ ହରିଦାସ ତାହା ଗ୍ରହଣ କଲେ ନାହିଁ ।

ବେତାଳ ଟିକିଏ ଚୁପ୍ ରହି ହଠାତ୍ ଧମକ ଦେଲାଭଳି ଭଙ୍ଗୀରେ ପ୍ରଶ୍ନ କଲା, "ରାଜା ! ଗନ୍ଧର୍ବ ପରଶ ପଥର ହରିଦାସଙ୍କୁ ନଦେଇ କୁମରସିଂହକୁ ଦେଲା କେଉଁ ବୁଦ୍ଧିରେ ? ଏହା ତା'ର ମତିଭ୍ରମ ଛଡ଼ା ଆଉ କ'ଣ ହୋଇପାରେ ? ପାରିଲେ ମୋ ପ୍ରଶ୍ନର ଉତ୍ତର

ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ରାଜା ବିକ୍ରମାର୍କ ଉତ୍ତର ଦେଲେ : "ଗନ୍ଧର୍ବ ଯାହା କଲେ, ତା'ର ମର୍ମ ସୂକ୍ଷ୍ମ ବୁଦ୍ଧି ଦ୍ୱାରା ବିଚାର କଲେ ଯାଇ ବୁଝିହେବ । ପୁଣି ମହାପୁରୁଷ କାହିଁକି କୁମରସିଂହକୁ ସେଠାକୁ ପଠାଇଥିଲେ, ସେକଥା ବି ମନେ ରଖିବାକୁ ହେବ । କୁମରସିଂହର ଯେପରି ପରିବର୍ତ୍ତନ ହେବ, ସେ ଯେପରି ଦୃଷ୍ଟାନ୍ତ ରୂପେ ଅନ୍ୟମାନଙ୍କୁ ଅସାଧୁ ନ କରିବ, ଏହାହିଁ ଥିଲା ମହାପୁରୁଷଙ୍କ ଲକ୍ଷ୍ୟ । ହରିଦାସର ମହତ୍ତ୍ୱ ଯୋଗୁଁ ଗନ୍ଧର୍ବ ଅଭିଶାପରୁ ମୁକ୍ତ ହେଲା, ଏ ଘଟଣା ଦେଖି କୁମରସିଂହର ଆଖି ଖୋଲିଗଲା । ମହତ୍ତ୍ୱ ଶୁଣି ଯଦି ଏତେ ଲାଭ ହୋଇପାରେ, ମହତ୍ତ୍ୱର ବିକାଶ ଦ୍ୱାରା ମଣିଷ କେତେ ଲାଭବାନ ନ ହେବ! ସେତିକି ପରିବର୍ତ୍ତନ ତା' ଭିତରେ ହେଲା ବୋଲି ସେ ହରିଦାସକୁ ପରଶ ପଥର ଯାଉଥିଲା । ତେବେ ଏ ପରିବର୍ତ୍ତନ ଫଳରେ ଯେ ଧନସମ୍ପତ୍ତି ଉପରୁ ତା'ର ମୋହ ହଠାତ୍ ଛୁଟିଯିବ, ସେକଥା ନୁହେଁ । କିନ୍ତୁ ପରଶ ପଥର ଦ୍ୱାରା ସେ ଯେତେ ମନ ସେତେ ଧନ ପାଇବ । ଅନ୍ୟକୁ ଦଗା ଦେଇ ଆଣିବା ଦରକାର ହେବ ନାହିଁ । ସମାଜରେ ସେ ଆଉ ଖରାପ ଉଦାହରଣ ସୃଷ୍ଟି କରିବ ନାହିଁ । ଗନ୍ଧର୍ବ ବୁଝୁଥିଲେ ଯେ ହରିଦାସ ମନରେ ପରଶ ପଥର ପ୍ରତି ଆକର୍ଷଣ ନାହିଁ । ଗନ୍ଧର୍ବ କୁମରସିଂହ ପ୍ରତି ଋଣୀ ଅନୁଭବ କରି ତା' ଋଣ ଶୁଝି ଦେଲେ । କିନ୍ତୁ ହରିଦାସ ପ୍ରତି ସେ ଥିଲେ କୃତଜ୍ଞ । କୃତଜ୍ଞତାର ପରିଶୋଧ ବସ୍ତୁ ଦ୍ୱାରା ହୁଏ ନାହିଁ । ହୃଦୟର ନିର୍ମଳ ସଦିଚ୍ଛା ଦ୍ୱାରା ପ୍ରାର୍ଥନା ଦ୍ୱାରା ହୁଏ ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସି ଯାଇ ପୁନରାୟ ସେ ପ୍ରାଚୀନ ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)



# ମୁଦ୍ରିକାର ଗୌରବ

ଜମିଦାର ଜୟସିଂହ ସେଦିନ ତାଙ୍କ ଉଦ୍ୟାନରେ ବୁଲୁଥିଲେ । କେତେକ ପ୍ରଜା ସେମାନଙ୍କ ଗୁହାରି ଶୁଣାଇବାକୁ ଆସିଲେ । ସେମାନଙ୍କ ମୁଖପାତ୍ର ଶ୍ୟାମସୁନ୍ଦର ଜମିଦାରଙ୍କ ପାଖକୁ ଯାଇ ସେମାନଙ୍କ ସମସ୍ୟା କହିଲେ ।

ଜମିଦାର ସେ ବିଷୟରେ ତାଙ୍କ ରାୟ ଦେବା ପୂର୍ବରୁ ନିଜେ ପିନ୍ଧିଥିବା ଗୋଟିଏ ମୁଦି ପ୍ରତି ଶ୍ୟାମସୁନ୍ଦରଙ୍କ ଦୃଷ୍ଟି ଆକର୍ଷଣ କରି ପଚାରିଲେ, "ଏ ମୁଦି ମୋର ଶୋଭା ବଢ଼ାଉଛି । ନୁହେଁ ?"

"ନା, ହଜୁର !" ସ୍ୱେକ୍‌ଠୋକ୍ କହିଦେଲେ ଶ୍ୟାମସୁନ୍ଦର ।

ଅଳ୍ପ ଦୂରରେ ଥିବା ପ୍ରଜାମାନେ ପ୍ରମାଦ ଗଣିଲେ । ବୃଥାରେ ଶ୍ୟାମସୁନ୍ଦର ଜମିଦାରଙ୍କୁ ଅସନ୍ତୁଷ୍ଟ କରୁଛନ୍ତି କାହିଁକି ?

"ତମେ କହୁଛ କ'ଣ ? ଏ ମୁଦି ବହୁତ ମୂଲ୍ୟବାନ । ଏହା ବିଶେଷ ଭାବରେ ପ୍ରସ୍ତୁତ ହୋଇଛି !" ଜମିଦାର କହିଲେ । ତାଙ୍କ କଣ୍ଠସ୍ୱରରେ ବିରକ୍ତି ମିଶିଥିଲା ।

"ହଜୁର ! ମୁଦି ଆପଣଙ୍କ ଶୋଭା ବଢ଼ାଉ ନାହିଁ, ଆପଣ ମୁଦିର ଶୋଭା ବଢ଼ାଉଛନ୍ତି । ମୁଦି ଆପଣଙ୍କ ହାତରେ ରହି ଗୌରବାନ୍ୱିତ !" ଶ୍ୟାମସୁନ୍ଦର କହିଲେ ।

ଜମିଦାରଙ୍କ ମୁହଁରେ ହସ ଫୁଟିଲା । ଏହା ପରେ ପ୍ରଜାଙ୍କ ସମସ୍ୟାର ସମାଧାନ କରିଦେବାକୁ ସେ ଅଧିକ ସମୟ ନେଇ ନଥିଲେ ।





ଭାରତର ମନ୍ଦିର

# ଉଡୁପିର କୃଷ୍ଣ ମନ୍ଦିର

କିମ୍ବଦନ୍ତୀ କହେ, ଶ୍ରୀକୃଷ୍ଣ ବଡ ହୋଇଯିବା ପରେ ତାଙ୍କ ଜନନୀ ଦେବକୀ ଥରେ ତାଙ୍କୁ ଶିଶୁ ରୂପେ ଦେଖିବାକୁ ମନ କଲେ । ସ୍ୱର୍ଗର ବଢ଼ାଣୀ ବିଶ୍ୱକର୍ମା ବାଳକୃଷ୍ଣଙ୍କର ଏକ ମୂର୍ତ୍ତି ଗଢ଼ି ତାଙ୍କୁ ଦେଲେ ।

ସମୟ କ୍ରମେ ସେ ମୂର୍ତ୍ତି ଅର୍ଜୁନଙ୍କ ହାତରେ ପଡ଼ିଲା । ପ୍ରଭାସ ଠାରେ ଶ୍ରୀକୃଷ୍ଣ ଦେହତ୍ୟାଗ କରିବା ଜହିରୁ ଅର୍ଜୁନ ସେ ମୂର୍ତ୍ତିକୁ ଗୋଟିଏ ବାଲୁକାସ୍ତୂପ ତଳେ ଲୁଚାଇ ଦେଲେ । ସେଠି ମାଟି ଦେଖାଗଲା ଉଚ୍ଚଳ ।





ହଜାର ହଜାର ବର୍ଷ ବିତିଗଲା । ଚତୁର୍ଦ୍ଦଶ ଶତାବ୍ଦୀରେ ସେଠି ଗୋଟିଏ ବୋଇତ ପହଞ୍ଚିଲା । ବୋଇତର ମାଲିକ କୂଳରେ ବିଶ୍ରାମ ନେଇ ବୋଇତକୁ ଫେରିବା ବେଳକୁ ସେ ଉଚ୍ଚଳ ମାଟି ପ୍ରତି ଆକୃଷ୍ଟ ହେଲେ । ମାଟିତକ ଉଠାଇ ନେଇ ସେ ନିଜ ବୋଇତରେ ରଖିଲେ ।



ଆଧୁନିକ କର୍ଣ୍ଣାଟକର ଉଡୁପି ନିକଟରେ ସମୁଦ୍ର କୂଳରେ ବସିଥିଲେ ଭାରତର ଜଣେ ମହାନ୍ ବିଷ୍ଣୁଭକ୍ତ ମାଧ୍ୱାଚାର୍ଯ୍ୟ । ସେ ଧ୍ୟାନରେ ଜାଣିଲେ ଯେ ଗୋଟିଏ ଅଦ୍ଭୁତ ଘଟଣା ଘଟିବାକୁ ଯାଉଛି । ଅଳ୍ପ ସମୟ ଭିତରେ ସେ ଅଦୂରରେ ବୋଇତ ଦେଖିଲେ ।

ହଠାତ୍ ସମୁଦ୍ରରେ ଝଡ଼ ଉଠିଲା । ମାଧ୍ୱାଚାର୍ଯ୍ୟ ବୋଇତ ଦେଖିପାରୁଥାନ୍ତି, କିନ୍ତୁ ନାବିକମାନେ କୂଳ ଦେଖିପାରୁ ନଥାନ୍ତି ! ବୋଇତ ବିପର୍ଯ୍ୟସ୍ତ ହୋଇ ପଡୁଥାଏ । ବୋଇତର ମାଲିକ ପ୍ରାଣର ଆଶା ଛାଡିଦେଲେ ।





ମାଧ୍ୱାଚାର୍ଯ୍ୟ ତାଙ୍କ ଗୈରିକ ଚଦର ଉଡ଼ାଇବାକୁ ଲାଗିଲେ । ଭୀଷଣ ବର୍ଷା ଭିତର ଦେଇ ନାବିକମାନେ ସେହି ଗୋଟିଏ ମାତ୍ର ବସ୍ତ୍ର ଦେଖିପାରୁଥାନ୍ତି । ବୋଇତକୁ ସେହି ଦିଗରେ ଆଣିବା ଫଳରେ ତାହା ନିରାପଦରେ କୂଳରେ ଲାଗିଲା ।

ମାଧ୍ୱାଚାର୍ଯ୍ୟଙ୍କୁ ପ୍ରଣାମ କଲେ ବୋଇତର ମାଲିକ । "ଆପଣ ଆମମାନଙ୍କୁ ଓ ଆମ ବୋଇତକୁ ରକ୍ଷା କଲେ । ସାରା ବୋଇତ ଆପଣଙ୍କୁ ଦେଇଦେଲି ।" କହିଲେ ମାଲିକ । ମାଧ୍ୱ କହିଲେ, "ଆଚ୍ଛା, ତମ ବୋଇତ ଦେଖିବା ଚାଲ । କିଛି ମୂଲ୍ୟବାନ ବସ୍ତୁ ହୁଏତ ମିଳିଯିବ ।"






ମାଧ୍ୱାଚାର୍ଯ୍ୟ ବୋଇତ ଭିତରକୁ ଯିବା ମାତ୍ରେ ମାଲିକ ତାଙ୍କୁ କେତେ ଧନରତ୍ନ ଦେଖାଇଲେ । କିନ୍ତୁ ସେ ସେସବୁ ପ୍ରତି ଖାଲି ଅନାଇ ଦେଲେ, କିଛି ଛୁଇଁଲେ ନାହିଁ । ହଠାତ୍ ତାଙ୍କ ଆଖି ପଡ଼ିଗଲା ସେ ମାଟି ଭର୍ତ୍ତି ଥଳି ଉପରେ । ସେ ତାକୁ ଜାବୁଡ଼ି ଧରିଲେ ।

"ସେ ତୁଚ୍ଛା ମାଟି ଆଜ୍ଞା ! ଆପଣ ତାକୁ ନେଇ କ'ଣ କରିବେ ? ଯେତେ ଇଚ୍ଛା ଧନରତ୍ନ ନେଇଯା'ନ୍ତୁ ।" ମାଲିକ କହିଲେ । କିନ୍ତୁ ମାଧ୍ୱାଚାର୍ଯ୍ୟ ସେ ମାଟି ଓଜାଡ଼ି ଦେଲେ । ତହିଁ ଭିତରୁ ବାହାରିଲା ବାଳକୃଷ୍ଣଙ୍କ ମୂର୍ତ୍ତି ।





ଗୋଟିଏ ମନ୍ଦିର ତୋଳି ମୂର୍ତ୍ତିକୁ ଅଭିଷିକ୍ତ କରାଗଲା । ମାଧ୍ୱାଚାର୍ଯ୍ୟ ଆଠଜଣ ତରୁଣଙ୍କୁ ଦୀକ୍ଷା ଦେଲେ । ସେମାନେ ତାଙ୍କ ପୂଜା କରିବା ସଙ୍ଗେ ସଙ୍ଗେ ମାଧ୍ୱଙ୍କ ଦର୍ଶରେ ବ୍ୟୁତ୍ପତ୍ତି ଲାଭ କଲେ ।

ସେହି ଦିନରୁ ଯଥାବିଧି ପୂଜା ଚାଲି ଆସୁଛି । ମାଧ୍ୱାଚାର୍ଯ୍ୟ ଜାଳିଥିବା କେତୋଟି ଦୀପ ମଧ୍ୟ ଏଯାଏ ଅନିର୍ବାଣ ରହିଛି ବୋଲି କୁହାଯାଏ । ଉଡୁପିର କୃଷ୍ଣ ମନ୍ଦିର ବିଖ୍ୟାତ ତୀର୍ଥ ସ୍ଥଳ ।





ସେ ଆଠ ଶିଷ୍ୟଙ୍କର ଆଠଟି ମଠ । ପ୍ରତି ମଠ ଦୁଇ ବର୍ଷ ପାଇଁ ମନ୍ଦିର ପରିଚାଳନା କରନ୍ତି । ଜଣେ ମଠାଧୀଶ ଅନ୍ୟ ଜଣଙ୍କୁ ଦାୟିତ୍ୱ ହସ୍ତାନ୍ତର କରିବା ଉପଲକ୍ଷ୍ୟେ ଯେଉଁ ବିଶେଷ ଉତ୍ସବ ଓ ଶୋଭାଯାତ୍ରା ହୁଏ, ତାହାକୁ ପର୍ଯ୍ୟାୟ ବୋଲି କୁହାଯାଏ ।



# ପାଣ୍ଡିତ୍ୟ

ରମ୍ୟାନଗରର ସିଂହାସନରେ ନୂଆ ହୋଇ ଅଭିଷିକ୍ତ ହୋଇଥାନ୍ତି ଚନ୍ଦ୍ରଦେବ । ସେ ଯୁବକ ଲୋକ । ସିଂହାସନରେ ବସିବାର କଳ୍ପନା ସ୍ୱପ୍ନରେ ବି ତାଙ୍କ ମନକୁ କେବେ ଆସି ନଥିଲା । ହଠାତ୍ ରାଜା ମରିଗଲେ । ତାଙ୍କର ଏକମାତ୍ର ପୁଅ ରାଜାଙ୍କ ମୃତ୍ୟୁର ଅଳ୍ପଦିନ ଆଗରୁ ଶୀକାର କରିବାକୁ ଯାଇ ପ୍ରାଣ ହରାଇଥିଲେ । ରାଜ୍ୟ ହଠାତ୍ ଉତ୍ତରାଧିକାରୀ-ଶୂନ୍ୟ ହୋଇଗଲା । ଦୂର ସମ୍ପର୍କରେ ରାଜାଙ୍କ ପୁତୁରା ହେବେ ଚନ୍ଦ୍ରଦେବ । ତେଣୁ ତାଙ୍କ କପାଳରେ ଶିକା ଛିଡ଼ିଲା । ସେ ଆସି ରାଜା ହେଲେ ।

ଯୁବରାଜ ରାଜା ହୋଇଥିଲେ ଭିନ୍ନ କଥା ହୋଇଥାନ୍ତା । ଯୁବରାଜଙ୍କୁ ଦରବାରର ବିଧି ବ୍ୟବସ୍ଥା ଜଣା । କେଉଁ ଲୋକ ପ୍ରତି ସାବଧାନ ରହିବାକୁ ହେବ, କାହା ପ୍ରତି ଦୟା ପୋଷଣ କରିବାକୁ ହେବ, ଏସବୁ ଯୁବରାଜଙ୍କୁ ବଳେ ଜଣାଥାଏ । କିନ୍ତୁ ଚନ୍ଦ୍ରଦେବ ସେସବୁ ବୁଝୁ ନଥିଲେ । ସେ ଶାଢ ପାଇ ଅତ୍ୟନ୍ତ ଖୁସି ହୋଇ ଯାଇଥାନ୍ତି । ଯିଏ ତାଙ୍କୁ ପ୍ରଶଂସା କରୁଥାଏ, ସିଏ ତାଙ୍କ ପୁରସ୍କାର ଦେଉଥାନ୍ତି ।

ଚନ୍ଦ୍ରଦେବଙ୍କ ହିତୈଷୀମାନେ, ଯଥା ମନ୍ତ୍ରୀ, ସେନାପତି, ବୟସ୍ୟ ଏବଂ ସଭାସଦ୍‌ବର୍ଗ ଏଥିରେ ବିଚଳିତ ହେଲେ । ରାଜା ଏପରି ହାଲୁକା ଭାବରେ କାମ କଲେ କିପରି ଚଳିବ ? ସେମାନେ କିନ୍ତୁ କରିବେ ବା କ'ଣ ?

ଦିନେ ଯୁବକ ରାଜା ଉଦ୍ୟାନରେ ବସି ତାଙ୍କ ବୟସ୍ୟ ସହ ଗପସପ ହେଉଛନ୍ତି, ଜଣେ ପ୍ରହରୀ ଆସି କହିଲା, "ମହାରାଜ, ବଙ୍ଗ ରାଜଦରବାରର ଜଣେ ପଣ୍ଡିତ ଆପଣଙ୍କୁ ଭେଟିବାକୁ ଚାହାନ୍ତି ।"

"ବେଶ୍ । ଭଦ୍ରଲୋକଙ୍କୁ ଏଠାକୁ ବାଟ ଦେଖାଇ ଦିଅ ।" ରାଜା କହିଲେ ।



କିଛି ସମୟ ଭିତରେ ଭଦ୍ରବ୍ୟକ୍ତି ଆସି ପହଞ୍ଚିଗଲେ ଓ ଅନର୍ଗଳ କଣ୍ଠରେ ସଂସ୍କୃତରେ ରାଜାଙ୍କ ପ୍ରଶସ୍ତି ଗାନ କଲେ । ରାଜା ସନ୍ତୁଷ୍ଟ ହେଲେ ।

"ହେଲା, ହେଲା । ବେଶ୍ ଭଲ କବିତା ଲେଖିଛ । ଚମତ୍କାର! ତମେ ଆମର ପୃଷ୍ଠ-ପୋଷକତା ପାଇବାକୁ ଯୋଗ୍ୟ!" ରାଜା କହିଲେ । ଆଗନ୍ତୁକ ରାଜାଙ୍କୁ ବାରମ୍ବାର ନମସ୍କାର କଲେ ।

ବହୁ ରାଜ୍ୟ ଚମ୍ପାନଗରୀ ତୁଳନାରେ ଶ୍ରେଷ୍ଠ ରାଜ୍ୟ । ରାଜା ଚନ୍ଦ୍ରଦେବ ତେଣୁ ଗର୍ବିତ ଭାବରେ ଆଗନ୍ତୁକଙ୍କୁ ପଚାରିଲେ, "ତମ ରାଜ୍ୟରେ ପଣ୍ଡିତ ଓ କବିଙ୍କ ପ୍ରତି ଯଥେଷ୍ଟ ସମ୍ମାନ ମିଳେଛି? ଆମ ଭଳି ତମ ରାଜା ସେମାନଙ୍କୁ ମୁକ୍ତ ହସ୍ତରେ ଦାନ କରନ୍ତି?"

ଆଗନ୍ତୁକ ଗଦ୍‌ଗଦ୍ କଣ୍ଠରେ କହିଲେ, "ମହାରାଜ! ଆପଣଙ୍କ ଦାନପଣ ସହ ଆଉ କାହାର ତୁଳନା କିପରି ହେବ? ଆପଣଙ୍କ ବଦ୍‌ବଣ୍ଣ ସହ ଆଉ କେଉଁ ରାଜାଙ୍କର ତୁଳନା ହୋଇପାରେ? ସୂର୍ଯ୍ୟ ସହ ଚନ୍ଦ୍ରର ତୁଳନା ଯେପରି, ପଦ୍ମ ସହ ଘାସ ଫୁଲର ତୁଳନା ଯେପରି, ସମୁଦ୍ର ସହ ପୋଖରୀର ତୁଳନା ଯେପରି ଅସଙ୍ଗତ, ଆପଣଙ୍କ ସହ ଅନ୍ୟ ଯେ କୌଣସି ରାଜାର ତୁଳନା ସେହିପରି ଅସଙ୍ଗତ ।"

ରାଜା ଚନ୍ଦ୍ରଦେବ ମୃଦୁ ହସ ହସି ବୟସ୍ୟ ଆଡ଼େ ଅନାଇଲେ ଓ ନିଜ ବେକରୁ ସୁନା ହାର ବାହାର କରି ଆଗନ୍ତୁକଙ୍କୁ ଦେବାକୁ ଉଦ୍ୟତ ହେଲେ ।

ବୟସ୍ୟ କିନ୍ତୁ ହଠାତ୍ ଉଠିପଡ଼ି ରାଜାଙ୍କ କାନ୍ଧରେ ଗୋଟିଏ ଅସରପା ଚଢ଼ିଛି ବୋଲି ଅସରପା ଘୋଡ଼ାଇବା ଆଳରେ ରାଜାଙ୍କ କାନରେ କହିଦେଲେ, "ସବୁର୍ କରନ୍ତୁ!"

ରାଜା ହାର ନ କାଢ଼ି ଅଟକିଗଲେ ।

ବୟସ୍ୟ ଆଗନ୍ତୁକଙ୍କୁ ଅନାଇ କହିଲେ, "ଆପଣଙ୍କ ଦରବାରର ପଣ୍ଡିତ ରାମଶର୍ମା ମୋର ସଖା । ଅବଶ୍ୟ ଦଶବର୍ଷ ହେଲା ମୋ ସହ ଦେଖା ହୋଇ ନାହିଁ । ଦଶବର୍ଷ ତଳେ ଯେତେବେଳେ ମୁଁ ବହୁ ରାଜ୍ୟକୁ

ଯାଇଥିଲି, ସେତେବେଳେ ସେ ଭରତଙ୍କ ଚରିତ୍ର ଅବଲମ୍ବନ କରି ଖଣ୍ଡିଏ କାବ୍ୟ ରଚନା କରୁଥିଲେ । ଶୁଣିଛି, ତାହା ଯଥା ସମୟରେ ଶେଷ କରି ସେ ବିଶେଷ ଜନପ୍ରିୟ ହୋଇଛନ୍ତି । ଆପଣ ସେ କାବ୍ୟ ପଢ଼ିଛନ୍ତି ? କିପରି ହୋଇଛି ?"

"ପଢ଼ିଛି ମାନେ ? ମୁଁ ତାହା ତାଙ୍କ ଅନୁରୋଧରେ ସଂଶୋଧନ କରି ଦେଇଛି । ବେଶ୍ ଭଲ ହୋଇଛି । ରାଜା ତାଙ୍କୁ ପୁରସ୍କାର ଦେଇଛନ୍ତି ।" ଆଗନ୍ତୁକ କହିଲେ ।

"ବାଃ, ଶୁଣି ଖୁସି ହେଲି । ଆପଣ ପଣ୍ଡିତ ରାମଶର୍ମାଙ୍କର ହିତୈଷୀ, ତାଙ୍କ କାବ୍ୟର ସଂଶୋଧକ, ଏହା ବିଶେଷ ସମ୍ବାଦ । ଆପଣ ଆମର ସମ୍ମାନର ଯୋଗ୍ୟ । ଆପଣ ଆମ ଅତିଥି ଭବନରେ ଦୁଇ ତିନିଦିନ ରହିବେ ତ ?" ବୟସ୍ୟ ପଚାରିଲେ ।

ଆଗନ୍ତୁକ କହିଲେ, "ଆପଣ ଯଦି ଚାହିଁବେ ନ ରହିବି କାହିଁକି ? ଚମ୍ପାନଗରୀ ରାଜାଙ୍କ ଅତିଥି ହୋଇ ରହିବା କ'ଣ କମ୍ ସୌଭାଗ୍ୟର କଥା ?"

ରାଜା ପ୍ରହରୀକୁ ଡାକି କହିଲେ, "ଏ ମହାଶୟଙ୍କୁ ନେଇଯାଇ ଅତିଥି ଭବନରେ ଛାଡ଼ । ତତ୍ତ୍ୱାବଧାରକଙ୍କୁ କହିଦେବ, ଏହାଙ୍କ ଯତ୍ନ ନେବାରେ ଯେପରି କୌଣସି ତ୍ରୁଟି ନ ହୁଏ । ଏହାଙ୍କର ଯେପରି ରୁଚି, ସେହିପରି ଖାଦ୍ୟପେୟର ବ୍ୟବସ୍ଥା କର ।"

"ଯେ ଆଜ୍ଞା ମହାରାଜ !" ପ୍ରହରୀ କହିଲା । ଆଗନ୍ତୁକ ଯିବାକୁ ଉଦ୍ୟତ ହେବା ବେଳକୁ



ବୟସ୍ୟ କହିଲେ, "ଭାବିଥିଲି, ପଣ୍ଡିତ ରାମଶର୍ମାଙ୍କ ସହ ଆଉ ଜୀବନରେ ଦେଖା ହେବ ନାହିଁ । କିନ୍ତୁ ଆଜି ଖବର ପାଇଲି, ସେ ଆଗାମୀ କାଲି ମୋର ଆତିଥ୍ୟ ଗ୍ରହଣ କରିବେ । ଏଇ ବାଟରେ ସେ ତୀର୍ଥ ଯାଉଛନ୍ତି । ଆପଣଙ୍କ ସହ ଏଠି ଭେଟ ହେବ । ଦୁଇ ପଣ୍ଡିତଙ୍କ ମେଳ ହେବ । ଆମେ ଦରବାରରେ ଉଭୟଙ୍କ ଆବୃତ୍ତି ଓ ପ୍ରଶ୍ନୋତ୍ତର ଶୁଣିବା ।"

"ବାଃ, ଭଲ ହେବ ।" ରାଜା କହିଲେ । ଆଗନ୍ତୁକ କିଛି ନକହି ପ୍ରହରୀ ସହ ଚାଲିଗଲେ । ରାଜା ବୟସ୍ୟଙ୍କୁ ପଚାରିଲେ, "କହେ, ଏଡ଼େ ଗୁଣୀ ଲୋକକୁ ପୁରସ୍କାର ଦେବାରେ ବାଧା ଦେଲ କିଆଁ ?"

"ମହାରାଜ ! ଏ ଲୋକ ଠକ । ବଙ୍ଗ ଦରବାରରେ ରାମଶର୍ମା ବୋଲି କେହି ପଣ୍ଡିତ ନାହାନ୍ତି କି ଭରତଙ୍କ ଚରିତ ଉପରେ ସେ କାବ୍ୟ ଲେଖିବା ପ୍ରଶ୍ନ ଉଠୁନାହିଁ । ଏ ଲୋକ ଗୋଟାଏ ସଂସ୍କୃତ ପ୍ରଶସ୍ତି ଶିଖିଦେଇ ଆସିଥିଲା ମାତ୍ର !" ବୟସ୍ୟ କହିଲେ ।

"ସତେ ? ତେବେ ତ ତାକୁ ଦଣ୍ଡ ଦେବା ଆବଶ୍ୟକ !" ରାଜା କହିଲେ ।

"ମହାରାଜ ! ତାହାଠୁଁ ଅଧିକ ଜରୁରୀ ହେଲା ଆପଣ ନିଜେ ସତର୍କ ହେବା । ସେ ବଙ୍ଗ ଦରବାରର ପଣ୍ଡିତ ବୋଲାଇ ବଙ୍ଗ ରାଜାଙ୍କ ନିନ୍ଦା କଲା । ଆପଣଙ୍କ ଦରବାରର କୌଣସି ପଣ୍ଡିତ ଯାଇ ବଙ୍ଗ ରାଜାଙ୍କ ଆଗରେ ସେପରି କଲେ ଆପଣଙ୍କ ସମ୍ମାନ ରହନ୍ତା କି ? ତେଣୁ ଏ ଲୋକ ସତରେ ବଙ୍ଗ ଦରବାରର ପଣ୍ଡିତ ହୋଇଥିଲେ ବି ଏହାକୁ ପ୍ରଶ୍ରୟ ଦେବା ଅନୁଚିତ ।"

ରାଜା କହିଲେ, "ଠିକ୍ ।" ତା'ପରେ ବୁଝିବା ବେଳକୁ ସେ ଲୋକ ଅତିଥିଭବନରୁ ପଳାଇଛି । ରାମଶର୍ମା ଆସୁଛନ୍ତି ଶୁଣି ଧରା ପଡ଼ିବା ଭୟରେ ସେ ଏପରି କରିଛି ବୋଲି ବୁଝିବାକୁ ଅସୁବିଧା ହେଲା ନାହିଁ !





# ଶିବଲୀଳା

ତିନ୍ନଡ଼ୁ ସେହିଠାରେହିଁ ରହିଗଲେ, ତାଙ୍କ ସହିତ ଆସିଥିବା ଶବରମାନେ ସେଠାରୁ ଫେରିଗଲେ । ସେ ଭାବିଲେ, "ଆହା, କେତେଦିନ ହେବ ମୋର ପ୍ରଭୁ ଉପବାସରେ ରହିଛନ୍ତି, ଯାଏଁ କିଛି ଖାଦ୍ୟର ଯୋଗାଡ଼ ତାଙ୍କ ପାଇଁ କରେ ।" ତିନ୍ନଡ଼ୁ ନିଜର ଧନୁଷବାଣ ଧରି ଜଙ୍ଗଲକୁ ଗଲେ । ଜଙ୍ଗଲରୁ ଜନ୍ତୁଟିଏ ଶିକାର କରି ତାକୁ ନିଆଁରେ ସିଝାଇ ନେଇ ଆସିଲେ ଓ ନଦୀରୁ କିଛି ପାଣି ମଧ୍ୟ ଆଣିଲେ । ସ୍ନାନ କରାଇବା ପରେ ସେହି ସିଝା ମାଂସକୁ ତିନ୍ନଡ଼ୁ ଶିବଙ୍କୁ ଅର୍ପଣ କରି କହିଲେ, "ଆପଣ ଭୋଜନ ଗ୍ରହଣ କରନ୍ତୁ, ନଚେତ୍ ମୁଁ ମଧ୍ୟ ନ ଖାଇ ପ୍ରାଣ ତ୍ୟାଗ କରିବି ।"

ତାଙ୍କର ସରଳ ଭକ୍ତିରେ ଶିବ ପ୍ରସନ୍ନ ହୋଇ ସ୍ୱୟଂ ଆବିର୍ଭୂତ ହୋଇ କହିଲେ, "ବତ୍ସ, ଉଠ, ମୁଁ ତୋର ସମର୍ପିତ ଖାଦ୍ୟ ନିଶ୍ଚୟ ଖାଇବି ।"

ଜଣେ ଶିବଭକ୍ତ ବ୍ରାହ୍ମଣ ମଧ୍ୟ ସେହି ମନ୍ଦିରରେ ଜୀବନ୍ତ ଶିବ ବିଗ୍ରହ ଅଛନ୍ତି ଜାଣି ସେଠାକୁ ଆସୁଥାଏ । କିନ୍ତୁ ସେ ଓ ତିନ୍ନଡ଼ୁ କେହି କାହାକୁ ଜାଣନ୍ତି ନାହିଁ । ବ୍ରାହ୍ମଣଙ୍କର ନାମ ଶିବକୃପା । ସେ ଦେଖିଲେ କିଏ ଜଣେ ଏଠାକୁ ଆସି ମନ୍ଦିର ଅପବିତ୍ର କରୁଛି । ମାଂସଖଣ୍ଡ ଏଠି ସେଠି ପଡ଼ିଛି । ପୂଜା ବିଧିବଦ୍ଧ ଭାବରେ ହେବାର କୌଣସି ଚିହ୍ନବର୍ଣ୍ଣ ନାହିଁ । ସେ ଶିବଙ୍କୁ ସ୍ନାନ କରାଇ ମନ୍ଦିର ସଫା କରି ଅତି ଭକ୍ତିଭରେ ଶିବଙ୍କୁ ପୂଜା କଲେ । ସେ



ମଧ୍ୟ ପ୍ରାର୍ଥନା କରି କହିଲେ, "ପ୍ରଭୁ, ଏପରି କାମ କିଏ କରୁଛି ମୁଁ ଜାଣି ପାରୁନାହିଁ । ଆପଣ ନ କହିଲେ ମୁଁ ଏଇଠି ନ ଖାଇ ନ ପିଇ ମରିବି ।"

ଶିବ ତତ୍‌କ୍ଷଣାତ୍ ଆବିର୍ଭୂତ ହୋଇ କହିଲେ, "ବତ୍ସ ଶିବକୃପା, ଏଠାକୁ ଏକ ଜଙ୍ଗଲୀ ଯୁବକ ଆସେ । ସେ ମୋର ବଡ଼ ପ୍ରିୟ ଭକ୍ତ । ତା'ର ସରଳ ହୃଦୟର ଭକ୍ତି ମୋତେ ବଡ଼ ପ୍ରଭାବିତ କରିଛି । ତେଣୁ ସେ ଯାହା ଅର୍ପଣ କରେ ମୁଁ ତାହା ଗ୍ରହଣ କରେ । ତୁ ଯଦି ତା'ର ଭକ୍ତି ଦେଖିବାକୁ ଚାହୁଁ ତ ମୋର ବିଗ୍ରହ ପଛରେ ଲୁଚିରହି ଦେଖ ।"

ଶିବକୃପା ଲୁଚି ରହିଥା'ନ୍ତି । କିଛି ସମୟ ପରେ ସେଠାରେ ଆସି ପହଞ୍ଚିଲେ ଭକ୍ତ ତିନ୍ନଡୁ; ପାଖରେ ଜଳପାତ୍ର ନାହିଁ । ପାଟିରେ ଭର୍ତ୍ତି କରି ଯେଉଁ ପାଣି ଆଣିଥିଲେ ସେଇଥିରେ ଶିବଙ୍କର ସ୍ନାନ ସମାପନ ହେଲା । ତା'ପରେ କିଛି ବେଲପତ୍ର ସହିତ ମାଂସ ସିଝା ସବୁ ଶିବଙ୍କ ପାଖରେ ସେ ଅର୍ପଣ କଲେ । କିନ୍ତୁ ଆଜି ଶିବ କିଛି ମାତ୍ର ଗ୍ରହଣ କଲେ ନାହିଁ । ବରଂ ଦେଖିଲେ ଶିବଙ୍କ ଆଖିରୁ ପାଣି ଝରୁଛି । ସେ ବଡ଼ ବ୍ୟସ୍ତ ହୋଇ ପଡିଲେ ଓ ବ୍ୟାକୁଳ ହୃଦୟରେ ନାନା ଭାବରେ ପ୍ରାର୍ଥନା କଲେ । କିନ୍ତୁ କ୍ରମେ ସେ ଦେଖିଲେ ଜଳ ବଦଳରେ ଶିବଙ୍କ ନେତ୍ରରୁ ଝରୁଛି ରକ୍ତ ।

ସେ କ'ଣ କରିବେ କିଛି ବୁଝିପାରିଲେ ନାହିଁ । ଭାବିଲେ, "ଆଖିରେ ବ୍ୟଥା ହୋଇଛି ବୋଲି ବୋଧହୁଏ ଖାଦ୍ୟ ଦେଖିପାରୁ ନାହାନ୍ତି ।" ସେ ଭାବିଲେ ନିଜର ସରସ ସୁନ୍ଦର ଆଖିଟିଏ ଦେଲେ ଶିବ ଖୁସି ହେବେ । ତତ୍‌କ୍ଷଣାତ୍ ଶରମୁନରେ ଆଖିଟିଏ ତାଡିଦେଲେ ଭକ୍ତ ତିନ୍ନଡୁ ଓ ସେଇଟି ଶିବଙ୍କ ବିଗ୍ରହରେ ଲଗାଇ ଦେଲେ । ଶିବଙ୍କ ଆଖିଟି ଠିକ୍ ହୋଇଗଲା । କିନ୍ତୁ ଏ କ'ଣ ? ପରମୁହୂର୍ତ୍ତରେ ଅନ୍ୟ ଆଖିଟିରୁ ମଧ୍ୟ ଅନବରତ ରକ୍ତଧାର ବୋହିବାରେ ଲାଗିଛି ।

ତା'ପରେ ତିନ୍ନଡୁ କହିଲେ, "ଓ, ପୁଣି ଏତେ କଷ୍ଟ ? ପ୍ରଭୁ ଟିକିଏ ଅପେକ୍ଷା କରନ୍ତୁ ।"

ଏତକ କହି ସେ ନିଜର ଅନ୍ୟ ଆଖିଟିକୁ ବାହାର କରିବାକୁ ଗଲାବେଳେ ଶିବ ପ୍ରତ୍ୟକ୍ଷ ହେଲେ । ପ୍ରଥମେ ଶିବ ବ୍ରାହ୍ମଣଭକ୍ତ ଶିବକୃପାଙ୍କୁ କହିଲେ, "ଦେଖୁଛ, କେଡ଼େ ସରଳ ହୃଦୟ ଏ ପିଲାର ? ମୁଁ ତା'ର ଜିନିଷ ସବୁ ଗ୍ରହଣ ନ କରନ୍ତି କିପରି ?" ତା'ପରେ ସେ ଚନ୍ଦ୍ରଚୂଡ଼ଙ୍କୁ କହିଲେ, "ବତ୍ସ, ଆଉ ତୋ'ର ଆଖି ବାହାର କରିବା ଦରକାର ନାହିଁ । ତୁ କୃତକାର୍ଯ୍ୟ ହୋଇଛୁ । ଏବେ ତୁମେ ଦୁହେଁ କି ବର ଚାହଁ ?"

"ଆପଣ ଯାହା ଉଚିତ୍ ବିଚାରନ୍ତି ଦିଅନ୍ତୁ ।" ଦୁହେଁ ଏକ ସ୍ୱରରେ କହିଲେ । ତା'ପରେ ଶିବ ସେ ଦୁହିଁଙ୍କୁ କୈଳାସ ନେଇଗଲେ ଓ ନିଜ ପାଖରେ ଗଣଙ୍କ ମଧ୍ୟରେ ସ୍ଥାନ ଦେଲେ ।



ବୀରସିଂହ ନାମରେ ଏକ ଶିବଭକ୍ତ ଯୁବକ ଥାଏ । ସେ ଭଗବାନ ଶିବଙ୍କୁ ସର୍ବଦା ଉପାସନା କରେ । ପିଲାଦିନୁ ବାପ ମା' ମରି ଯାଇଥା'ନ୍ତି । ତା'ର କାକାହିଁ ତାକୁ ପାଳି ପୋଷି ମଣିଷ କରିଥିଲେ । ବୀରସିଂହର ବିବାହ ବୟସ ହେବାରୁ ତା'ର କାକା ଚନ୍ଦ୍ରସିଂହ ଥରେ କନ୍ୟା ଖୋଜି ଯାଇ ନିଜ ଶଶୁର ଘର ଗ୍ରାମ ହରିପୁରରେ ପହଞ୍ଚିଲେ । ସେଠାରେ ତାଙ୍କ ଶ୍ୟାଳକ ରବିଗୁପ୍ତଙ୍କ ସହିତ ଏ ବିଷୟରେ ଆଲୋଚନା କଲେ । ଶେଷକୁ ଚନ୍ଦ୍ରସିଂହ କହିଲେ, "ଆରେ ତୁମ ଝିଅ, ମୋହିନୀଟି ତ ବଡ଼ ହୋଇଗଲାଣି, ଦେଖିବାକୁ ସୁନ୍ଦର ଓ ଗୁଣର ପିଲାଟିଏ । ବୀରସିଂହ ପାଇଁ ଏଇଟି ବଡ଼ ଚମତ୍କାର ବୋହୂ ହେବ ।"

ରବିଗୁପ୍ତ କହିଲେ, "ଭାଇ, ମୋର ଆପତ୍ତିର ପ୍ରଶ୍ନ କେଉଁଠି ଉଠୁଛି !"

ଇତିମଧ୍ୟରେ ଥରେ ହରିପୁରର ରାଜା ଭାସ୍କରଦେବ ଘୋଡ଼ା ଉପରେ ମନ୍ତ୍ରୀରେ ଯାଉଁ ଯାଉଁ ମୋହିନୀକୁ କୋଠା ଉପରେ ଠିଆ ହୋଇଥିବାର ଦେଖିଲେ । ସେ ତା'ର ସୌନ୍ଦର୍ଯ୍ୟରେ ମୁଗ୍ଧ ହେଲେ ଓ ସେଇଠାରୁ ରାଜନବରକୁ ଫେରି ଆସିଲେ । ସେ ତାଙ୍କର ବିଚକ୍ଷଣ ଓ ଜ୍ଞାନୀ ମନ୍ତ୍ରୀମାନଙ୍କୁ ଡ଼ାକି କହିଲେ, "ସେହି ଯୁବତୀକୁ ମୁଁ ବିବାହ କରିବାକୁ



ଚାହେଁ, ଆପଣମାନେ ଏ ବିଷୟରେ ଯଥା ଶୀଘ୍ର କାର୍ଯ୍ୟପନ୍ଥା ଗ୍ରହଣ କରନ୍ତୁ ।"

ପ୍ରଧାନ ମନ୍ତ୍ରୀ ରବିଗୁପ୍ତଙ୍କ ଘରକୁ ଯାଇ ତାଙ୍କୁ କହିଲେ, "ମହାଶୟ, ଏ ରାଜ୍ୟରେ ଆପଣହିଁ ସମସ୍ତିଙ୍କ ଅପେକ୍ଷା ଭାଗ୍ୟବାନ୍ । ସ୍ୱୟଂ ରାଜା ଆପଣଙ୍କ ଝିଅକୁ ବିବାହ କରିବାକୁ ପସନ୍ଦ କରିଛନ୍ତି । ଶୁଭମୁହୂର୍ତ୍ତ ଠିକ୍ କରି କହନ୍ତୁ ।"

ରବିଗୁପ୍ତ ମହା ଅଡୁଆରେ ପଡିଲେ । କହିଲେ, "ମୋ ଝିଅ ଯଦି ଦେଶର ରାଣୀ ହେବ ତେବେ ତା'ଠାରୁ ବଳି ସୌଭାଗ୍ୟର କଥା ଆଉ କ'ଣ ଅଛି ? କିନ୍ତୁ ମୋର ଦୁର୍ଭାଗ୍ୟ ଯେ ମୁଁ ଆଗରୁ ଅନ୍ୟ ଜଣକୁ କଥା ଦେଇ ସାରିଛି । ସେ ବାଗ୍‌ଦତ୍ତା ।"

ମନ୍ତ୍ରୀ ଯାଇ ରାଜାଙ୍କୁ ସବୁ କଥା କହିବାରୁ ରାଜା ତାଙ୍କର ମିତ୍ର ଓ ଘନିଷ୍ଠ ସମ୍ପର୍କୀୟମାନଙ୍କୁ ଡାକି କହିଲେ, "ମୋହିନୀକୁ ବିବାହ ନ କଲେ ବଞ୍ଚି ରହିବା ମୋ ପକ୍ଷେ କଷ୍ଟକର ହେବ ।"

ସେମାନେ ପୁଣି ଥରେ ରବିଗୁପ୍ତଙ୍କୁ ଆସି ବୁଝାଇଲେ, "ମହାଶୟ, ଭାଗ୍ୟ ଅନୁକୂଳ, ଭାଗ୍ୟଲକ୍ଷ୍ମୀ ଆପଣଙ୍କ ଘରକୁ ପ୍ରବେଶ କରିବାକୁ ଇଚ୍ଛା କରିବା ବେଳେ ଆପଣ ତାଙ୍କୁ ନାଡ ଦେଇ ତଡୁଛନ୍ତି ? ଏ କିପରି କଥା ?"

"ଆପଣମାନେ ନିରର୍ଥକ ଚେଷ୍ଟା କରୁଛନ୍ତି । ରାଜା ମୋର ଜାମାତା ହେବାଠାରୁ ଆଉ କି ଭାଗ୍ୟ ଅଧିକ ଅଛି ? କିନ୍ତୁ ଲୋଭରେ ପଡ଼ି ମୁଁ ମୋର ସତ୍ୟ ଭଙ୍ଗ କରିବା କ'ଣ ଆପଣ ଚାହାନ୍ତି ?" ରବିଗୁପ୍ତ କହିଲେ ।

ସେମାନେ ଅଗତ୍ୟା ରାଜପ୍ରାସାଦକୁ ଫେରି ଆସି ରାଜାଙ୍କୁ ବୁଝାଇଲେ, "ମହାରାଜ ଆପଣ ମୋହିନୀଙ୍କୁ ଭୁଲିଯା'ନ୍ତୁ । ରାଜ୍ୟରେ କ'ଣ ସୁନ୍ଦର କନ୍ୟାର ଅଭାବ ଅଛି ? ରବିଗୁପ୍ତ ସତ୍ୟ ରକ୍ଷା ପାଇଁ ଏପରି କରୁଛନ୍ତି । ତାଙ୍କର ଆଚରଣ ପ୍ରଶଂସନୀୟ ଅଟେ ।"

ରାଜା ସବୁ ଶୁଣି ଚୁପ୍ ରହିଲେ । ସମସ୍ତେ ଚାଲିଯିବା ପରେ ରାଜା ସ୍ୱୟଂ ମୋହିନୀର ଘରେ ଆସି ପହଞ୍ଚିଲେ । ରାଜାଙ୍କୁ ଦେଖି ରବିଗୁପ୍ତ ଓ ତାଙ୍କ ସ୍ତ୍ରୀ ବ୍ୟସ୍ତ ବିବ୍ରତ ହୋଇ ପଡ଼ିଲେ । କିନ୍ତୁ ମୋହିନୀ ବାପମା'ଙ୍କୁ ଧୈର୍ଯ୍ୟ ଧରିବାକୁ କହି ନିଜେ ରାଜାଙ୍କୁ ସ୍ୱାଗତ କରି




କହିଲା, "ଭଉଣୀ ଉପରେ ଈଶ୍ୱର ବହୁତ ଅନୁଗ୍ରହ, ତେଣୁ ସ୍ୱୟଂ ଏଠାକୁ ଆସିଛନ୍ତି ।"

ଏକଥା ଶୁଣି ରାଜା କହିଲେ, "ମୋହିନୀ, ଏ କି କଥା ? ମୁଁ ତ ତୁମକୁ ମୋର ପତ୍ନୀ ରୂପେ ଗ୍ରହଣ କରିବାକୁ ଏଠାକୁ ଆସିଛି ।"

"ମହାରାଜ, ବୀରସିଂହଙ୍କ ସହିତ ମୋର ଯେଉଁ ମୁହୂର୍ତ୍ତରୁ ବିବାହ ଠିକ୍ ହୋଇଛି, ସେଦିନୁ ମୁଁ ତାଙ୍କୁହିଁ ମୋର ପତି ରୂପରେ ମାନି ନେଇଛି । ଆପଣ ସ୍ୱୟଂ କୁହନ୍ତୁ ଜଣେ ସ୍ତ୍ରୀ କ'ଣ ଦୁଇଜଣ ସ୍ୱାମୀ କରିପାରେ ?"

"ତୁମକୁ ନ ପାଇ ଯିଏ ଅସହ୍ୟ କଷ୍ଟ ପାଉଛି ତାକୁହିଁ ତମେ ଉପଦେଶ ଦେଉଛ ?" ରାଜା ପଚାରିଲେ ।

ମୋହିନୀ ଚୁପ୍ ରହିଲା । ମନ ଭିତରେ ମୋହିନୀ ଶିବଙ୍କୁ ଧ୍ୟାନ କଲା ଓ ରାଜାଙ୍କୁ କହିଲା, "ଯଦି ଭଗବାନ୍ ଶଙ୍କରଙ୍କର ଇଚ୍ଛା ଥିବ ମୋ ସହିତ ଆପଣଙ୍କର ବିବାହ ହେବ ତେବେ ତାହା ନିଶ୍ଚୟହିଁ ହେବ । ଆମ ବଂଶରେ ଏପରି ନିୟମ ଅଛି ଯେ ବିବାହର ସାତଦିନ ପୂର୍ବରୁ ନିଷ୍ଠା ପୂର୍ବକ ଶିବଙ୍କର ଆରାଧନା କରିବାକୁ ହୁଏ । ମୁଁ ଆଜିଠାରୁହିଁ ବ୍ରତ ଆରମ୍ଭ କରିବି ।"

ରାଜା ମୋହିନୀର ଏପରି କଥା ଶୁଣି କିଛିଟା ଆଶ୍ୱସ୍ତ ହୋଇ ରାଜନଗରକୁ ଫେରିଗଲେ । ତା'ପରେ ରବିଗୁପ୍ତ ସବୁ କିଛି ଗୋଟିଏ ଚିଠିରେ ଲେଖି ଚନ୍ଦ୍ରସିଂହଙ୍କ ପାଖକୁ ପଠାଇଲେ । ବୀରସିଂହ ବଡ଼ମାନଙ୍କ ଆଶିର୍ବାଦ ଓ ଅନ୍ୟମାନଙ୍କ ଶୁଭେଚ୍ଛା ସହ ହରିପୁର ଗ୍ରାମରେ ପହଞ୍ଚିଲା । ସେଠାରେ ଗୁପ୍ତରେ ଦୁହିଁଙ୍କର ବିବାହ ସମାପ୍ତ ହେବା ପରେ ସେ କନ୍ୟାକୁ ଧରି ଘୋଡ଼ା ଛୁଟାଇ ନିଜ ଗ୍ରାମକୁ ଫେରି ଆସିଲା ।

ଗୁପ୍ତଚରଙ୍କଠାରୁ ଏକଥା ଶୁଣି ରାଜା କ୍ରୋଧାନ୍ୱିତ ହୋଇ ତାଙ୍କର କେତେକ ସୈନ୍ୟଙ୍କୁ ଡ଼ାକି କହିଲେ, "ତୁରନ୍ତ ବୀରସିଂହକୁ ବଧ କରି କନ୍ୟାକୁ ବଳପୂର୍ବକ ଘେନି ଆସ ।"

ବୀରସିଂହ ଉପସ୍ଥିତ ବିପଦ ଦେଖି ଭଗବାନ୍ ଶିବଙ୍କୁ ଆରାଧନା କଲା । ଶିବ ନିଜେ ପ୍ରତ୍ୟକ୍ଷ ହୋଇ ବୀରକୁ ଏକ ଭୟଙ୍କର ଆୟୁଧ ଦେଇ

କହିଲେ, "ବୀର, ନେ ଏଇ ଆୟୁଧ ଦ୍ୱାରା ଶତ୍ରୁ ସଂହାର କର।" ଏକଥା କହି ଶିବ ଅନ୍ତର୍ଦ୍ଧାନ ହୋଇଗଲେ।

ଅଳ୍ପ ସମୟ ମଧ୍ୟରେ ବୀରସିଂହ ସମସ୍ତ ସୈନିକଙ୍କୁ ନିପାତ କରିଦେଲା। ଏସବୁ ଦୃଶ୍ୟ ପାହାଡ଼ ଉପରୁ ନିଜେ ରାଜା ଦେଖୁଥିଲେ, ସେ ସୈନ୍ୟମାନଙ୍କୁ ପଠାଇ ଦେଇ ନିଶ୍ଚିନ୍ତ ରହିପାରି ନଥିଲେ। ତେଣୁ ସେ ମଧ୍ୟ ଯୁଦ୍ଧ କରିବାକୁ ଆସୁଥିଲେ। ଦୂରରୁ ଆହୁରି ମଧ୍ୟ ରାଜା ଦେଖିଲେ ଯେ ଜଣେ ଶିବଭକ୍ତକୁ ଦେଖିବା ମାତ୍ରେ ବୀରସିଂହ ଯୁଦ୍ଧ ନ କରି ପ୍ରଣାମ କଲା। ଏକଥା ଦେଖି ରାଜା ଏକ ଶିବଭକ୍ତର ଛଦ୍ମବେଶରେ ବୀରସିଂହ ପାଖକୁ ଗଲେ। ତାଙ୍କୁ ଦେଖି ବୀରସିଂହ ଅସ୍ତ୍ର ତ୍ୟାଗ କରି ପ୍ରଣାମ କରନ୍ତେ ରାଜା ସୁଯୋଗ ପାଇ ତାକୁ ତରବାରିରେ କାଟି ଦେବାକୁ ବାହାରିଲେ। ଅଥଚ ତରବାରି ଚଳାଇବା ମାତ୍ରେ ତାହା ଏକ ଫୁଲମାଳରେ ପରିଣତ ହୋଇ ବୀରସିଂହର ଗଳାରେ ଝୁଲିଲା। ପରେ ପରେ ତାଙ୍କର ନିଜ ଲୋକ ସବୁ ଆସି ପହଞ୍ଚିଗଲେ।

ଏ ଘଟଣା ପରେ ପରେ ଭଗବାନ୍ ଶିବ ସେଠାରେ ଆବିର୍ଭବ ହୋଇ କହିଲେ, "ବୀରସିଂହ, ଏବେ କି ବର ମାଗୁଛୁ ମାଗ।"

ବୀରସିଂହ କହିଲା, "ପ୍ରଭୁ ମୋତେ, ମୋର ପତ୍ନୀକୁ, ଆମର ବନ୍ଧୁମାନଙ୍କୁ ଓ ଏଠାରେ ଉପସ୍ଥିତ ସମସ୍ତଙ୍କୁ ଶିବ ସାଯୁଜ୍ୟ ପ୍ରଦାନ କରନ୍ତୁ।"

"ତୁମର ଅପକାର କରିଥିବା ଏଇ ପାପାତ୍ମା ରାଜାକୁ ମଧ୍ୟ କ'ଣ ତାହା ଦିଆଯିବ?" ଶିବ ପଚାରିଲେ।

"ପ୍ରଭୁ, ଏହି ରାଜା ଶୈବ ଚିହ୍ନ ଦେହରେ ଧାରଣ କରିଛି ଏବଂ ଆପଣଙ୍କର ପ୍ରତ୍ୟକ୍ଷ ଦର୍ଶନ ଲାଭ କରିଛି, ତା'ପରେ ଆଉ ସେ ପାପାତ୍ମା ହୋଇ କିପରି ରହିଲା?" ବୀରସିଂହ କହିଲା। ଭଗବାନ ଶିବ ଅତ୍ୟନ୍ତ ପ୍ରସନ୍ନ ହୋଇ ସମସ୍ତଙ୍କୁ ସାଥିରେ ଧରି କୈଳାଶକୁ ଗଲେ।



# ପ୍ରାର୍ଥୀ ମନୋନୟନ

ଦୁର୍ଗାପୁରର ଜମିଦାର ଲକ୍ଷ୍ମୀକାନ୍ତଙ୍କ ମାଳୀ ଭୋଳା ବୁଢ଼ା ହୋଇଯିବାରୁ କାମରୁ ଅବସର ନେବାକୁ ଚାହିଲା । ଜମିଦାର ତା'ର ଦରମା ବ୍ୟତୀତ ଅଧିକ କିଛି ଧନ ଦେଇ ତାକୁ କାମରୁ ଛୁଟି ଦେଲେ । ଯିବା ପୂର୍ବରୁ ଜମିଦାର ତାକୁ କହିଲେ, "ଦେଖ୍, ଭୋଳା, ତୁ ଯିବା ପୂର୍ବରୁ ତୋ ସ୍ଥାନରେ ତୋ ପରି ଜଣେ ଭଲ ମଣିଷକୁ ରଖାଇଦେଇ ଯିବୁ ।"

ଭୋଳାର ସ୍ଥାନ ଖାଲି ହେଉଛି ଶୁଣି ତିନିଜଣ ବଳିଷ୍ଠ ଲୋକ ସେହି ସ୍ଥାନ ପାଇଁ ପ୍ରାର୍ଥୀ ଥା'ନ୍ତି । ଭୋଳା ଓ ଜମିଦାର ଫାଟକ ନିକଟରେ ଠିଆ ହୋଇ କଥା ହେଉଥା'ନ୍ତି; ଏହି ସମୟରେ ତିନିଜଣଯାକ ଆସି ସେଠାରେ ପହଞ୍ଚିଲେ ।

"ଶୁଣ, ତୁମ ଭିତରୁ ଜଣେ ପ୍ରଥମେ ଏହି ବଡ଼ ପଥରଟିକୁ ଏଠାରୁ ଅନ୍ୟ ସ୍ଥାନକୁ ନେଇ ଯାଅ ।" ସେଠାରେ ପଡ଼ିଥିବା ଏକ ବଡ଼ ପଥରକୁ ଦେଖାଇ ଭୋଳା କହିଲା ।

ସେଥିରୁ ଦୁଇଜଣ ପ୍ରାୟ ଏକ ସ୍ୱରରେ କହି ଉଠିଲେ, "ଇରେ ବାବା, ଏଡ଼େ ବଡ଼ ପଥର ପୁଣି କିଏ ଠେଲି ଉଠାଇବ ? ଆମେ ତ ବଗିଚା କାମ କରିବାକୁ ଆସିଛୁ । ଏ କାମ ଆମ ଦେଇ ହେବ ନାହିଁ ।" ଏକଥା କହି ଦୁଇଜଣ ତୁରନ୍ତ ସେ ସ୍ଥାନ ଛାଡ଼ି ପଳାଇଲେ ।

ତୃତୀୟ ବ୍ୟକ୍ତିଟି କହିଲା, "ଆପଣ ଶାବଳଟିଏ ଦିଅନ୍ତୁ ମୁଁ ଏଇଟି ଏଠାରୁ ବାହାର କରି ଦେବି । କିନ୍ତୁ ଏହା ଏଠାକୁ ଆସିଲା କିପରି ?" ଏକଥା କହି ସେ ପାଦ ଦେଇ ଠେଲି ଦେବା ମାତ୍ରେ ସେଇଟା ଗଡ଼ିଗଲା ।

ଶୁଖିଲା ପତ୍ରକୁ ଏକ ବଡ଼ ବସ୍ତାରେ ପୁରାଇ ଉପରେ ରଙ୍ଗ ଦେଇ ଭୋଳାହିଁ ଏକ ବଡ଼ ପଥରର ଭ୍ରମ ସୃଷ୍ଟି କରିଥିଲା । ଭୋଳା ତୃତୀୟ ବ୍ୟକ୍ତି ଶଙ୍କରକୁ ସୁପାରିଶ କରି ଜମିଦାରଙ୍କୁ କହିଲା, "ପରିଶ୍ରମ କରି ଅର୍ଜ୍ଜନ କରିବାର ଇଚ୍ଛା ଏହି ବ୍ୟକ୍ତି ଭିତରେ ଅଛି । ଏହାକୁହିଁ ଆପଣ ମାଳୀ ଭାବରେ ରଖନ୍ତୁ ।" ଜମିଦାର ଶଙ୍କରକୁ ମାଳୀ ରୂପରେ ନିଯୁକ୍ତ କଲେ ।





# ଜାଗୃତର ପ୍ରତୀକ

ଗଜପୁର ଗ୍ରାମରେ ଶଙ୍କରଦାସ ନାମକ ଜଣେ ଗଣ୍ୟମାନ୍ୟ ବ୍ୟକ୍ତି ଥା'ନ୍ତି । ତାଙ୍କର ଧନ ଯେତେ ଥିଲା ଯଶ ମଧ୍ୟ ସେତିକି ଥିଲା । ଦିନେ ସେ ସନ୍ଧ୍ୟାବେଳେ ପଡ଼ୋଶୀ ଗ୍ରାମରୁ ଫେରିବା ବେଳେ ବାଟରେ ତାଙ୍କ ଗୋଡ଼ ଖସିଗଲା । ସେ ଗୋଟାଏ ପଙ୍କ ଗଡ଼ିଆରେ ପଡ଼ି ପ୍ରାୟ ଛାତି ପର୍ଯ୍ୟନ୍ତ ପଙ୍କରେ ବୁଡ଼ିଗଲେ । ସେ ବାହାରିବାକୁ ଯେତେ ଚେଷ୍ଟା କଲେ ସେତେ ଆହୁରି ଭିତରକୁ ବୁଡ଼ିଲେ । ତେଣୁ ସେ ଅଧିକ ଚେଷ୍ଟା ନ କରି ପୋଖରୀ ହୁଡ଼ାକୁ ଧରି କୌଣସି ମତେ ଠିଆ ହୋଇଥା'ନ୍ତି ପଙ୍କ ଭିତରେ ।

ସାରା ରାତି ଗଲା । ସକାଳୁ ଜଣେ ଯୁବକ ଦୂରରେ ଯାଉଥିବାର ଦେଖି ସେ ଚିତ୍କାର କରି ତାକୁ ଡାକିଲେ ଓ ସେଥିରୁ ଉଠାଇବାକୁ ଅନୁରୋଧ କଲେ । ଯୁବକଟି ବଡ଼ କଷ୍ଟ ସହକାରେ ନିଜ ଚାଦର ଦ୍ୱାରା ଶଙ୍କରଦାସଙ୍କୁ ପଙ୍କରୁ ଉଠାଇଲା । କାରଣ ସେ ଥିଲେ ମୋଟା । କିନ୍ତୁ ଶଙ୍କରଦାସ ଉପରକୁ ଉଠି ଆସିବା ବେଳକୁ ଯୁବକଟି ମଧ୍ୟ ଗୋଡ଼ ଖସି ପଙ୍କରେ ଗଳି ପଡ଼ିଲା । ଶଙ୍କରଦାସ ଅକ୍ଳେଶରେ ତାକୁ ଧରି ଉଠାଇ ଆଣିଲେ ।

ଆଖପାଖରେ କେଉଁଠି ପାଣି ନଥିଲା । ତେଣୁ ଦୁହେଁ କାଦୁଅ ଲଟପଟ ହୋଇ ଗ୍ରାମକୁ ଫେରିଲେ । ବାଟରେ ବାର୍ତ୍ତାଳାପ କରୁ କରୁ ଯୁବକଟି କହିଲା କି ତା'ର ନାମ ଶେଖର । ସେ ବେଲପୁରରୁ ଆସୁଛି ଗଜପୁର ଯିବାକୁ ।

"ଭାଇ, ଗଜପୁରରେ ତୁମର କାମ କ'ଣ ?" ଶଙ୍କରଦାସ ପଚାରିଲେ ।

"ସେଠାରେ ଶଙ୍କରଦାସ ନାମକ ଜଣେ ଭଦ୍ର ବ୍ୟକ୍ତିଙ୍କ ସହିତ ଦେଖା କରିବାକୁ ମୁଁ ଯାଉଛି ।" ଯୁବକଟି ଉତ୍ତର ଦେଲା ।

ସୁରେନ୍ଦ୍ର



ଦେଖୁଥା'ନ୍ତି । ଯାଉ ଯାଉ ସେହି ଗାଁର ଗୁଲବଗ୍ରନ୍ଦ ନାମକ ଶେଠ ପଚାରିଲା, "ଭାଇ, ତୁମର ଏ ଦଶା କିପରି ହେଲା ?"

ଶଙ୍କରଦାସ ଶେଖର ଆଡ଼କୁ ସଙ୍କେତ କରି କହିଲେ, "ଏହି ଯୁବକଟି ବଗ୍ରିବ ପଙ୍କରେ ପଡ଼ିଯାଇଥିଲେ । ମୁଁ ତାଙ୍କୁ ପଙ୍କରୁ ଉଦ୍ଧାର କରୁ କରୁ ନିଜେ ମଧ୍ୟ ପଡ଼ିଗଲି ।" କହି ହୋ ହୋ କରି ସେ ହସିଲେ । ଗୁଲବଗ୍ରନ୍ଦ ମଧ୍ୟ ହସି ହସି ନିଜ ରାସ୍ତାରେ ଚାଲିଗଲା ।

କିଛିବାଟ ଯିବା ପରେ ଏକ ପରିଚିତ ବୁଢ଼ା ମଧ୍ୟ ଶଙ୍କରଦାସଙ୍କୁ ସେହି ଏକହିଁ ପ୍ରଶ୍ନ କଲେ । ଶଙ୍କରଦାସ କହିଲେ, "ମଉସା, ମୁଁ ପାଖ ଗ୍ରାମରୁ ଫେରୁଥିଲି । ବାଟରେ ଗୋଡ଼ ଖସି ପଙ୍କରେ ପଡ଼ିଗଲି । ଏହି ଦୟାଳୁ ଭଦ୍ରବ୍ୟକ୍ତି ମୋତେ ଜାଣି ମରଣମୁଖରୁ ଉଦ୍ଧାର କଲେ ।"

ପୁଣି କିଛିବାଟ ଯିବା ଉତ୍ତାରୁ ଜଣେ ବ୍ୟକ୍ତି ଶଙ୍କରଦାସଙ୍କୁ ସେହି ପଙ୍କ ବିଷୟରେ ପଚାରନ୍ତେ ଶଙ୍କରଦାସ ଉତ୍ତର ଦେଲେ, "ମୁଁ ପାଖ ଗ୍ରାମରୁ ଘରକୁ ଫେରୁଥିଲି; ଦେଖିଲି ଗାଡ଼ିଟିଏ ପଙ୍କ ଭିତରେ ଗଳି ପଡ଼ିଛି । ମୁଁ ଓ ଏହି ଯୁବକ ବହୁ କଷ୍ଟ କରି ଗାଡ଼ି ଓ ବଳଦଙ୍କୁ ପଙ୍କରୁ ଉଦ୍ଧାର କଲୁ । ସେହି ଯୋଗୁ ଏହି ଦଶା ।"

ଶେଖର ସବୁ ଚୁପ୍‌ଚାପ ଶୁଣି ଯାଉଥାଏ ହେଲେ ଶଙ୍କରଦାସଙ୍କ ବ୍ୟବହାରରେ ସେ ବହୁତ ଆଶ୍ଚର୍ଯ୍ୟ ହେଲା । ସେ ପଚାରିଲା, "ମହାଶୟ, ଆପଣ ତିନିଜଣଙ୍କୁ ତିନି ପ୍ରକାର

ଉତ୍ତର ଶୁଣି ଶଙ୍କରଦାସ ମନେ ମନେ ଆଶ୍ଚର୍ଯ୍ୟ ହେଲେ ଓ ହସିଲେ । କାରଣ ସେ ଏଇ ପ୍ରଥମଥରହିଁ ଯୁବକଙ୍କୁ ଦେଖୁଛନ୍ତି । ତେଣୁ ସେ ପଚାରିଲେ, "ତାଙ୍କ ସହିତ କି କାମ ଅଛି ?"

"ସେକଥା ତ ମୁଁ ଆପଣଙ୍କୁ କହିପାରିବି ନାହିଁ । ତେବେ ଦୟାକରି ମୋତେ ଏଇ ପଙ୍କ ସବୁ ସଫା କରିବାରେ ସାହାଯ୍ୟ କରନ୍ତୁ ଓ ଶଙ୍କରଦାସଙ୍କ ଘରଟା କେଉଁଠି ଦେଖାଇ ଦିଅନ୍ତୁ ।" ଶେଖର କହିଲା ।

ଶଙ୍କରଦାସ କିଛି ଉତ୍ତର ଦେଲେ ନାହିଁ । ଦୁହେଁ ପଙ୍କ ସାଲୁବାଲୁ ହୋଇ ଚାଲିଥା'ନ୍ତି । ରାସ୍ତାରେ ସମସ୍ତେ ତାଙ୍କୁ ବିଚିତ୍ର ଦୃଷ୍ଟିରେ

କଥା କାହିଁକି କହିଲେ ଆପତ୍ତି ନଥିଲେ ଦୟାକରି କହିବେ କି ?"

"ତମେ ଯେବେ ଶଙ୍କରଦାସଙ୍କ ପାଖରେ କି କାମ ଅଛି ନ କହିବ ତେବେ ମୁଁ କାହିଁକି ଏକଥା ତୁମକୁ କହିବି ?" ଶଙ୍କରଦାସ କହିଲେ ।

"ପ୍ରଥମେ ଆପଣ ମୋ ମନର ସନ୍ଦେହ ଦୂର କରନ୍ତୁ ମୁଁ ତା'ପରେ ନିଶ୍ଚୟ ମୋ କଥା କହିବି ।" ଶେଖର କହିଲା ।

ଶଙ୍କରଦାସ ତା' କଥାରେ ସ୍ୱୀକୃତ ହୋଇ କହିଲେ, "ଦେଖ ଶେଖର, ଗଜପୁର ଗ୍ରାମରେ ଯେଉଁ କେତେଜଣଙ୍କର ଧନ, ଯଶ, ନାମ ସବୁ କ୍ଷେତ୍ରରେ ବେଶ୍ ପ୍ରଭାବ ଅଛି ମୁଁ ସେମାନଙ୍କ ମଧ୍ୟରୁ ଜଣେ । ମୁଁ ସାରା ରାତି ପଙ୍କରେ ପଡ଼ି ରହିଥିଲି ଜାଣିଲେ ସେମାନେ ମୁହଁରେ ଯେତେ ସହାନୁଭୂତି ଦେଖାଇଲେ ମଧ୍ୟ ମନେ ମନେ ହସିବେ । ତଦ୍ୱାରା ମୁଁ ଅପମାନ ବୋଧ କରିବି ।"

"ଆପଣ ଏପରି କ'ଣ କହୁଛନ୍ତି ? ମଣିଷ ଉପରେ ତ ଅଗ୍ରୁନକ କେତେ ନା କେତେ ବିପଦ ପଡ଼େ । ସେଥିରେ ଅପମାନିତ ହେବାର କ'ଣ ଅଛି ?" ଶେଖର କହିଲା ।

ଏକଥା ଶୁଣି ଶଙ୍କରଦାସ ଜୋର୍ ରେ ହସିଲେ ଓ କହିଲେ, "ଶୁଣ, ପ୍ରତ୍ୟେକ ଲୋକଙ୍କୁ ମୁଁ ତା'ର ସ୍ୱଭାବ ଅନୁସାରେ ଉତ୍ତର ଦେଇଛି । ପ୍ରଥମେ ଯେଉଁ ଶେଠ ବୁଢ଼ା ଦେଖା ହେଲା, ଗ୍ରାମରେ କିଏ ମଲେ ବା ବଞ୍ଚିଲେ ତା'ର କିଛି ଯାଏ ଆସେ ନାହିଁ । କିନ୍ତୁ ପ୍ରତ୍ୟେକ



ଘଣ୍ଟା ପଛରେ କିଛି ନା କିଛି ମତଲବ ଅଛି ବୋଲି ସନ୍ଦେହ କରେ । ତେଣୁ ତାକୁ ତୁମ ନାମ କହି ରକ୍ଷା ପାଇଲି । ସେହିପରି ଅନ୍ୟମାନଙ୍କୁ ମଧ୍ୟ ଉତ୍ତର ଦେଲି ।"

"ଆଚ୍ଛା ଆପଣ ଏଇ ଛୋଟ ଛୋଟ କଥାକୁ ମଧ୍ୟ ବୁଦ୍ଧି ଖଟାଇ କରି ଚଳାଇ ନେଉଛନ୍ତି ? ଆପଣଙ୍କଠାରୁ ଏହି ଚତୁରପଣିଆ ଶିଖିବା ନିଶ୍ଚୟ ଉଚିତ୍ ।" ଶେଖର ପ୍ରଶଂସା କରି କହିଲା ।

"ଆଚ୍ଛା ଏବେ କୁହ ତୁମର ଶଙ୍କରଦାସଙ୍କ ସହିତ କ'ଣ କାମ ଥିଲା ?" ଶଙ୍କରଦାସ ପଚାରିଲେ ।

"ମହାଶୟ, କଥା କ'ଣ କି ମୁଁ ସରଳ ଲୋକ । ଦେଖି ଚାହିଁ ସ୍ଥାନ, କାଳ, ପାତ୍ର ଅନୁସାରେ କୁଶଳତାର ସହିତ ବ୍ୟବହାର କରିବା ବା କଥା କହିବା ମୁଁ ଜାଣେନି । ସେଇସବୁ ଟିକିଏ ଶଙ୍କରଦାସଙ୍କଠାରୁ ଶିଖିବାକୁ ଆସିଥିଲି । ତେବେ ମୋର ତାଙ୍କ ସହିତ ପ୍ରତ୍ୟକ୍ଷ ପରିଚୟ ନାହିଁ ।" ଶେଖର କହିଲା ଓ ଟିକିଏ ମୌନ ରହି କହିଲା, "ମହାଶୟ, ଆପଣ ବିଖ୍ୟାତ ଶଙ୍କରଦାସ ନୁହଁନ୍ତି ତ ?"

"ନା, ତେବେ ସେ ମୋର ମିତ୍ର ।" ଶଙ୍କରଦାସ କହିଲେ ।

"ଆଚ୍ଛା, ଠିକ୍ ଅଛି, ତେବେ ମୁଁ ଯେଉଁଥିପାଇଁ ଆସିଥିଲି ସେ କଥା ସବୁ ଆପଣଙ୍କଠାରୁ ଶିଖିଗଲି । ମୋର କାମ ହୋଇଗଲା । ଆପଣଙ୍କୁ ଶତ ଧନ୍ୟବାଦ । ଏବେ ମୁଁ ମୋ ଗ୍ରାମକୁ ଫେରୁଛି ।" ଶେଖର କହିଲା ।

"ଆରେ, ଟିକିଏ ରୁହ, ସ୍ନାନ କରି ଖିଆପିଆ କରି ଯିବ ।" ଶଙ୍କରଦାସ କହିଲେ ।

"ଆଜ୍ଞା ନା, ବହୁତ ସହଜରେ ଆପଣଙ୍କଠାରୁ ମୁଁ ବହୁତ ବଡ଼ ଜିନିଷ ଶିଖି ନେଇଛି । ଏହି ପଙ୍କ ତ ମୋର ବୁଦ୍ଧି ଜାଗ୍ରତ ହେବାର ପ୍ରତୀକ । ଆଉ ସେଥିପାଇଁ ଆପଣ ମୋର ଖୁବ୍ ସହାୟତା କରିଛନ୍ତି । ଶତ ଧନ୍ୟବାଦ । ମୁଁ ଚାଲିଲି ।" କହିଲା ଶେଖର ଓ ନିଜ ଗ୍ରାମକୁ ଫେରିବାର ରାସ୍ତା ଧରିଲା ।





# ଛଟୋଟି ରେଖା

ପ୍ରାଚୀନ କାଳର କଥା । ଚୀନ୍ ଦେଶରେ ଚ୍ୟାଙ୍ଗ ନାମରେ ଥିଲେ ଜଣେ ମହାବୀର । ଦୁଷ୍ଟ ଓ ଅତ୍ୟାଚାରୀମାନଙ୍କୁ ଦମନ କରିବାରେ ଓ ସାଧୁ ଲୋକଙ୍କୁ ସହାୟତା କରିବାରେ ସେ ନିଜର ବଳ ଉପଯୋଗ କରୁଥା'ନ୍ତି ।

ଥରେ ବୀର ଯୋଦ୍ଧା ଚ୍ୟାଙ୍ଗ ରାଜଧାନୀ ଅଭିମୁଖେ ଯାଉଥା'ନ୍ତି କୌଣସି କାରଣରୁ । ସନ୍ଧ୍ୟା ହେବା ବେଳକୁ ସେ ବାଟ ଭୁଲି ଅନ୍ୟ ରାସ୍ତାରେ ଯାଉଥା'ନ୍ତି । ଦୂରରେ ଗୋଟିଏ ଗୃହ ଓ ତନ୍ମଧ୍ୟରୁ ଆସୁଥିବା ଆଲୋକ ରେଖା ଦେଖାଗଲା । ସେହି ଦିଗରେ ସେ ଘୋଡ଼ା ଛୁଟାଇ ଦେଲେ । ଅନ୍ତତଃ ରାତିକ ତ ଆଶ୍ରୟ ମିଳିଯିବ । ସେ ଘୋଡ଼ାରୁ ଓହ୍ଲାଇ ଦେଖିଲେ ଯେ ଘର ଭିତରେ ଦୀପ ଆଲୁଅରେ ବୁଢ଼ୀଟିଏ ବସି ସୂତା କାଟୁଛି । ସେ ମଧ୍ୟ ଘୋଡ଼ା ଟାପୁର ଶବ୍ଦ ଶୁଣି ବାହାରକୁ ଆସିଲା ଓ ପଚାରିଲା, "ତମେ କିଏ ? କୁଆଡ଼େ ଆସିଛ ?"

"ମା, ମୁଁ ରାସ୍ତା ଭୁଲି ଏଠାକୁ ଆସିଛି । ମୋତେ ରାତିଟିଏ ଆଶ୍ରୟ ଯଦି ଦିଅନ୍ତ ତେବେ ବହୁତ ଉପକାର ହୁଅନ୍ତା ।"

"ପୁଅ ଏ ଘରେ କାହାକୁ ଆଶ୍ରୟ ଦେବା ବା ନ ଦେବା ମୋ ହାତର କଥା ନୁହେଁ ।"

"ଏ ଘରେ କ'ଣ ତମେ ଏକା ରହୁଛ ?" ଚ୍ୟାଙ୍ଗ ପଚାରିଲେ ।

"ପୁଅ, ବହୁ ଦିନରୁ ମୋର ସ୍ୱାମୀ ମରି ଯାଇଛନ୍ତି । ମୋର ଗୋଟିଏ ବୋଲି ପୁଅ ବ୍ୟବସାୟ କରି ଦୂରରେ ରହେ ।" ବୁଢ଼ୀ ଥତମତ ହୋଇ କହିଲା ।

"ତୁମ ବୋହୂ କାହିଁ ?" ଚ୍ୟାଙ୍ଗ ପଚାରିଲେ ।

ବୋହୂ ନାମ ଶୁଣିହିଁ ବୁଢ଼ୀର ଦେହ କମ୍ପି ଉଠିଲା, "ପୁଅ, ତମେ ଏ ପ୍ରଶ୍ନ



କାହିଁକି ପଶୁଚିଲ ? ମୋ ବୋହୂ ତ ଭୁଲରେ ବୋଧହୁଏ ଝିଅଜନ୍ମ ପାଇଛି । ସେ ତ ଜଣେ ପହଲବାନ୍ । ବଡ଼ ବଡ଼ ବୀରପୁରୁଷ ମଧ୍ୟ ତା' ଆଗରେ ମଥା ନତ କରି ଚାଲିଯା'ନ୍ତି । ସେ ଇଚ୍ଛା କଲେ ମୋତେ ତା'ର କନିଷ୍ଠ ଆଙ୍ଗୁଳି ଦ୍ୱାରା ଏକ ମୁହୂର୍ତ୍ତରେ ମାରି ଦେଇ ପାରିବ । ବିଲେଇର ପଂଝା ତଳେ ମୂଷା ରହିଲା ପରି ମୁଁ ତା' ପାଖରେ ଥାଏ । ଟିକିଏ ଭୁଲ ହୋଇଗଲେ ସେ ମୋତେ ଗାଳିଗୁଲଜ କରେ ଓ ପିଟେ । ସେଥିପାଇଁ କହୁଛି, ପୁଅ ! ତୁମକୁ ଆଶ୍ରୟ ଦେବାର ଅଧିକାର ଏ ଘରେ ମୋର ନାହିଁ ।" ବୁଢ଼ୀ କହିଲା ।

ବୁଢ଼ୀର ଦୁଃଖ କାହାଣୀ ଶୁଣି ତ୍ୟାଙ୍ଗଙ୍କର ବୁଢ଼ୀର ବୋହୂ ଉପରେ ରାଗ ଆସିଲା । ସେ କହିଲେ, "ମା', ତୁମ ବୋହୂ କାହିଁ, ଯିଏ ବୁଢ଼ୀ ଶାଶୂ ଉପରେ ଏତେ ଅତ୍ୟାଚାର କରୁଛି ? ଏ ସମସ୍ୟାର ସମାଧାନ ମୁଁ ଆଜିହିଁ କରିବି ।"

ତା'ପରେ ତ୍ୟାଙ୍ଗ ଘୋଡ଼ାକୁ ଗଛରେ ବାନ୍ଧିଦେଇ ଦୁଆରବନ୍ଧ ଆଗରେ ବସିଲେ ।

"ପୁଅ, ତୁମେ ଏ ଗୋଳମାଳରେ ଆଦୌ ମୁଣ୍ଡ ପୂରାଅ ନାହିଁ । ପ୍ରତିଦିନ ଜଙ୍ଗଲକୁ ଯାଇ ନିଜ ହାତରେ ବାଡ଼ିଖଣ୍ଡେର ବି ସାହାଯ୍ୟ ନ ନେଇ ଜନ୍ତୁ ଜାନୁଆର ସବୁ ମାରି ଧରି ଚାଲି ଆସୁଛି । ସେଇଆକୁ ବିକି ଆମେ ଏଠାରେ ଚଳୁ । ବହୁତ ଦିନ ଅନ୍ତରରେ ଥରେ ଥରେ ଆସି କିଛି ପଇସାପତ୍ର ଦେଇ ପୁଣି ଚାଲିଯାଏ । ମୋତେ ତ ତା'ରି ପାଖରେ ଚଳିବାକୁ ହେବ, ସେଥିପାଇଁ ମୁଁ ତାକୁ କିଛି ନ କହି ସବୁ ସହିଯାଏ ।"

ବୁଢ଼ୀ ମୁହଁରୁ ସବୁକଥା ଶୁଣି, ତ୍ୟାଙ୍ଗ କହିଲେ, "ମା', ମୁଁ ଏପର୍ଯ୍ୟନ୍ତ ସର୍ବଦା ଦୁର୍ବଳକୁ ରକ୍ଷାକରି ଆସିଛି । ଏଠାରେ ମଧ୍ୟ ମୁଁ ଠିକ୍ ତାକୁ ଶିକ୍ଷା ଦେବି ।"

କିଛି ସମୟ ପରେ ବୋହୂ ଆସି ପହଞ୍ଚିଲା । ପିଠିରେ ଗୋଟାଏ ମୃତ ବାଘ ବୋହି ଆଣି ତଳେ କଚାଡ଼ି ଦେଇ କହିଲା, "ଦୀପଟା ଟିକିଏ ତ ବାହାରକୁ ଆଣିବ !"

ବୁଢ଼ୀ ବଳକଲରେ ଦୌଡ଼ ଦୌଡ଼ ଦୀପ ଆଣି ଠିଆ ହୋଇଗଲା । ଚ୍ୟାଙ୍ଗଙ୍କର କ୍ରୋଧ ମଧ୍ୟ ମୃତ ବାଘକୁ ଦେଖି ଟିକିଏ ଥଣ୍ଡା ପଡ଼ିଗଲା ।

"ଏ ଘୋଡ଼ା କୁଆଡୁ ଆସିଲା ?" ବୋହୂ ଚ୍ୟାଙ୍ଗଙ୍କୁ ନ ଦେଖି ପଚାରିଲା ।

ଚ୍ୟାଙ୍ଗ ସମ୍ମୁଖକୁ ଆସି କହିଲେ, "ଏ ଘୋଡ଼ା ମୋର । ମୁଁ ରାଜଧାନୀ ବାଟରେ ଯାଉ ଯାଉ ରାସ୍ତା ଭୁଲି ଏଠାରେ ପହଞ୍ଚିଛୁ । ରାତି ହୋଇଗଲା । ଆଲୁଅ ଦେଖି ମୁଁ ଏଠାକୁ ଆସିଲି ରାତିକ ଆଶ୍ରୟ ପାଇଁ ।"



ବୋହୂ ଏକଥା ଶୁଣି ଶାଶୁଙ୍କୁ ଅନାଇ କହିଲା, "ଆରେ, ଅତିଥି ଜଣେ ଘରକୁ ଆସିଛନ୍ତି, ତମେ ତାଙ୍କୁ ବାହାରେ ଠିଆ କରି ରଖାଇଛ ?" ପୁଣି ଚ୍ୟାଙ୍ଗଙ୍କୁ କହିଲା, "ଭାଇ ଏ ବୁଢ଼ୀର ଦୋଷ କ୍ଷମା କରନ୍ତୁ । ମୁଁ ଏଇ ବାଘ ସହିତ ଲଢ଼ି ତାକୁ ମାରିବାକୁ ଟିକିଏ ସମୟ ଲାଗିଲା, ତେଣୁ ଫେରୁ ଫେରୁ ଡେରି ହେଲା । ଏପର୍ଯ୍ୟନ୍ତ ଯେ ଆପଣଙ୍କର କୌଣସି ଆଦର ସତ୍କାର ହୋଇ ପାରିନାହିଁ ସେଥିପାଇଁ ମୁଁ ଦୁଃଖିତ ।"

"ଆପଣ ଏପରି କହନ୍ତୁ ନାହିଁ । ମୋତେ ଆଶ୍ରୟ ଦେଉଛନ୍ତି ସେଇ ଯଥେଷ୍ଟ ।" ଚ୍ୟାଙ୍ଗ କହିଲେ ଓ ମନେ ମନେ ଭାବିଲେ ଯେ ବୋହୂର ତ ବେଶ୍ ଶିଷ୍ଟାଚାର ଜ୍ଞାନ ଅଛି ।

କିଛି ସମୟ ପରେ ବୋହୂ ବାଘ ମାଂସର ତରକାରି ଓ ଅନ୍ୟାନ୍ୟ କିଛି ଖାଦ୍ୟ ଆଣି ଚ୍ୟାଙ୍ଗଙ୍କୁ ଦେଲା । ଖାଦ୍ୟ ଦେଖି ଚ୍ୟାଙ୍ଗ ବ୍ୟସ୍ତ । ତେବେ ଭଦ୍ରତା ରକ୍ଷା କରି କିଛି ଖାଇଲେ । ତା'ପରେ ବୋହୂ ବିନମ୍ର ସ୍ୱରରେ କହିଲା, "ଆମେ ଗରିବ ଲୋକ । ଆମ ଖାଦ୍ୟ ଆପଣଙ୍କୁ ଭଲ ନ ଲାଗିପାରେ । କିଛି ଭାବିବେ ନାହିଁ ।"

"ଆପଣ କ'ଣ କହୁଛନ୍ତି ? ଖାଦ୍ୟ ତ ବେଶ୍ ବଢ଼ିଆ ଥିଲା ।" ଚ୍ୟାଙ୍ଗ କହିଲେ ।

କିଛି ସମୟ ଚୁପ୍ ରହିବା ପରେ ଚ୍ୟାଙ୍ଗ କହିଲେ, "ଭଉଣୀ, ତମେ ଏତେ ଶକ୍ତିଶାଳୀ ଓ ବୁଦ୍ଧିମତୀ ହୋଇ ମଧ୍ୟ ଗୁରୁଜନମାନଙ୍କର ଅବମାନନା କପରି କରୁଛ ? ଏହାର କାରଣ କ'ଣ ?"

ପ୍ରଶ୍ନ ଶୁଣିହିଁ ବୋହୁ ରାଗିଯାଇ କହିଲା, "କ'ଣ ହେଲା ? ଏ ବୁଢ଼ୀ ମୋ ବିରୁଦ୍ଧରେ ତୁମକୁ ତାହେଲେ କିଛି କହିଛି ।"

"ଭଉଣୀ ତୁମେ ଭୁଲ୍ ଭାବ ନାହିଁ । ସେ ବୁଢ଼ୀ ମୋତେ କିଛି କହି ନାହାନ୍ତି । କିନ୍ତୁ ତୁମର ତାଙ୍କ ପ୍ରତି ବ୍ୟବହାରରୁ ମନେହୁଏ ତମର ବୁଦ୍ଧି ଓ ବଳ ଅନୁସାରେ ଶାଶୁଙ୍କ ପ୍ରତି ବ୍ୟବହାର ବେଶି ଭଲ ନୁହେଁ । ଏଇକଥା ଭାବି ତମକୁ ମୁଁ ପଚାରିଲି ।" ତ୍ୟାଙ୍ଗ୍ କହିଲେ ।

ତା'ପରେ ବୋହୁ ଗୋଟିଏ ହାତରେ ଦୀପ ଧରି ଅନ୍ୟ ହାତରେ ଯୋଦ୍ଧା ବୀର ତ୍ୟାଙ୍ଗଙ୍କର ପୋଷାକ ଧରି କିଛି ବାଟ ଘୋଷାରି ଆଣି କହିଲା, "ଏଇଠି ଠିଆ ହୁଅ । ତୁମକୁ କିଛି କଥା କହିବାର ଅଛି ।"

ବୋହୁ ଚଟାଣ ଉପରେ ଗୋଟିଏ ହାତ ରଖି ତା'ର ଆଙ୍ଗୁଳିରେ ଗାର କାଟି କହିଲା, "ଦେଖ, ଦିନେ ଏପରି ହେଲା, ଅନ୍ୟ ଦିନ ଅନ୍ୟ ଏକ ଘଟଣା ହେଲା, ତୃତୀୟ ଦିନ ଏପରି ହେଲା, ତା'ପରେ କୁହ ମୋର ଦୋଷ ନା ବୁଢ଼ୀର ଦୋଷ ?" ଇତିମଧ୍ୟରେ ଆଙ୍ଗୁଳି ବୁଲାଇବା ଦ୍ୱାରା ପଥର ଚଟାଣରେ ଗଭୀର ରେଖା କାଟି ହୋଇ ଯାଇଛି ।

ସେଇ ସବୁ ରେଖା ଦେଖିହିଁ ତ୍ୟାଙ୍ଗ୍‌ଙ୍କର ମନ ଭୟରେ କମ୍ପି ଉଠିଲା—ସେ ତରବର ହୋଇ କହିଲେ, "ଭଉଣୀ, ଏଥିରେ ମତଦ୍ୱୈଧର ଅବକାଶ ନାହିଁ । ବୁଢ଼ୀରହିଁ ସବୁ ଭୁଲ ।"

"ବାସ୍ ଏତିକିହିଁ ମୁଁ ଶୁଣିବାକୁ ଚାହୁଁଥିଲି ।" ବୋହୁ କହିଲା । ତା'ପରେ ତ୍ୟାଙ୍ଗଙ୍କର ଶୋଇବା ପାଇଁ ସେ ସବୁ ପ୍ରକାର ବ୍ୟବସ୍ଥା କରିଦେଲା ।

ଏ ଘଟଣା ଦେଖିବା ପରେ ବୀର ତ୍ୟାଙ୍ଗଙ୍କ ମନରେ ବୁଢ଼ୀକୁ ରକ୍ଷା କରିବାର ଇଚ୍ଛା କୁଆଡ଼େ ଉଭେଇ ଗଲା । ସେ ଭଗବାନ୍‌ଙ୍କୁ ଧନ୍ୟବାଦ ଦେଲେ ଯେ ନିଜେ କୌଣସି ମତେ ବଞ୍ଚି ଯାଇଛନ୍ତି । ରାତିରେ କି ଆଉ ନିଦ ହୁଏ ? ରାତି ପାହିବାର ବହୁ ପୂର୍ବରୁ ସେ ସେ ସ୍ଥାନ ଛାଡ଼ି ପଳେଇଥିଲେ ।






# ଗଜମୂର୍ଖ

ଗୋଟିଏ ଗ୍ରାମରେ ତିନୋଟି ଭାଇ ରହୁଥାନ୍ତି, ରାମ, ଶ୍ୟାମ ଓ ମୋହନ। ବାପା ମରିଯିବା ପରେ ବଡ଼ ଦୁଇଭାଇ ସମ୍ପତ୍ତି ସବୁ ଭାଗ କରିନେଲେ। ସାନ ମୋହନ ଥିଲା ଗଜମୂର୍ଖ। ତାକୁ ଗୋଟାଏ ବଳଦ ଓ କାଠ ବାକ୍ସଟିଏ ଦେଇ ଠକି ଦେଲେ।

ଦିନେ ମୋହନ ଦେଖିଲା ରାମ ଓ ଶ୍ୟାମ ହାଟକୁ ଯାଉଛନ୍ତି ଓ ବ୍ୟବସାୟ କରି ପଇସା ରୋଜଗାର କରୁଛନ୍ତି। ସେ ଭାବିଲା, "ମୁଁ ମଧ୍ୟ ହାଟକୁ ଯିବି।" ପରଦିନ ସକାଳୁ ଉଠି ବଳଦଟିକୁ ଧରି ହାଟକୁ ଚାଲିଲା ବିକ୍ରି କରିବା ପାଇଁ।

ବାଟରେ ଯାଉଁ ଯାଉଁ ଗୋଟିଏ ବଡ଼ ଗଛ ଦେଖିଲା। ପବନରେ ଶୁଖିଲା ଡାଳ ସବୁ ଘଷି ହୋଇ କଟମଟ ଶବ୍ଦ କରିବାରୁ ମୂର୍ଖ ମୋହନ ଗଛକୁ ପଚାରିଲା, "କ'ଣ, ତମେ ବଳଦଟି କିଣିବାକୁ ଚାହଁ? ତା'ର ଦାମ ହେଉଛି କୋଡ଼ିଏ ଟଙ୍କା। ଚାହଁ ତ କିଣିନିଅ।"

ଗଛଡାଳରୁ ପୁଣି କଟକଟ ଶବ୍ଦ ହେବାରୁ ମୋହନ କହିଲା, "ଓ, ବଳଦର ମୂଲ୍ୟ ତମେ କାଲିକି ଦେବ? ଆଜି ତୁମ ପାଖରେ ପଇସା ନାହିଁ? ଠିକ୍ ଅଛି।" ମୋହନ ବଳଦକୁ ଗଛରେ ବାନ୍ଧିଦେଇ ଘରକୁ ଫେରିଗଲା।

"ଆରେ ମୋହନ, ତୋ ବଳଦ କୁଆଡେ ଗଲା କି?" ରାମ ଓ ଶ୍ୟାମ ପଚାରିଲେ।

"କୋଡ଼ିଏ ଟଙ୍କାରେ ବିକିଦେଲି।"

ରାମ ଓ ଶ୍ୟାମ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତେବେ ଟଙ୍କା କାହିଁ?"

"କାଲି ସେ ଦେବ।" ପରଦିନ ସକାଳୁ ସକାଳୁ ମୋହନ ଗଛ ପାଖରେ ଯାଇ ପହଞ୍ଚିଲା। ପବନ ଯୋଗୁ ଗଛରୁ କଟକଟ ଶବ୍ଦ ବାହାରିଲା। କିନ୍ତୁ ବଳଦଟି ଆଉ ସେଠାରେ ନଥିଲା।




ମୋହନ ଗଛଟିକୁ କହିଲା, "ପୂର୍ବ ସର୍ତ୍ତ ଅନୁସାରେ ମୋ ଟଙ୍କା ଦେଇଦିଅ ।"

ଗଛରୁ ପୁଣି କଟକଟ ଶବ୍ଦ ଶୁଭିଲା । ମୋହନ କହିଲା, "ଓ ଆଜି ଦିନେ ସମୟ ନେବାକୁ ଚାହୁଁଛ ? ଠିକ୍ ଅଛି ।"

"କରେ ମୋହନ, ଟଙ୍କା ଆଣିଲୁ ?" ରାମ ଓ ଶ୍ୟାମ ତାକୁ ପଚାରିଲେ ।

"ନାହିଁ । ଆଜି ମିଳିଲା ନାହିଁ । କାଲି ନିଶ୍ଚୟ ମିଳିଯିବ ।" ମୋହନ କହିଲା ।

"ଆଚ୍ଛା କହ ତ, ବଳଦ କାହାକୁ ବିକିଲୁ ?"

"କାହିଁକି ? ଗଛକୁ ବିକିଛି ।"

"ତୁଟା ନିହାତି ଗଜମୂର୍ଖ ।" ଦୁଇଭାଇ ତାକୁ ଗାଳି ଦେଇ ଚାଲିଗଲେ ।

ପରଦିନ ସକାଳୁ ଉଠି ମୋହନ ହାତରେ କୁରାଢ଼ି ଧରି ଗଛ ପାଖକୁ ଧାଇଁଲା । ସେଠାରେ ପହଞ୍ଚି ଗଛକୁ କହିଲା, "ଆରେ ତମେ ମୋ ପଇସା ଦେଇଦିଅ ତ ! ମୋ ଭାଇମାନେ ସେଥିପାଇଁ ମୋତେ ବହୁତ ଗାଳି ଦେଉଛନ୍ତି ।"

ପବନ ଯୋଗୁ ଗଛରୁ ପୁଣି କଟକଟ ଶବ୍ଦ ବାହାରିଲା । ମୋହନ ରାଗି କରି କହିଲା, "ଏବେ ଆଉ ତୋର କିଛି କଥା ଶୁଣା ଯିବନାହିଁ ।"

ଏଥରକ ମଧ୍ୟ ଶୁଖିଲା ଡାଳରୁ କଟକଟ ଶବ୍ଦ ବାହାରିଲା । ମୋହନ ରାଗିଯାଇ ଗଛ ଉପରେ ଦେଲା ଏକ କୁରାଢ଼ୀ ଚୋଟ । ଗଛ ତ ଶୁଖିଲା ଥିଲା । ସଙ୍ଗେ ସଙ୍ଗେ ଭାଙ୍ଗି ପଡ଼ିଲା । ତା' ଭିତର ଥିଲା ପୋଲା ଫମ୍ପା । କିନ୍ତୁ ତା' ଭିତରେ ଅନେକ ଦିନରୁ ଡାକୁମାନେ କିଛି ସୁନା ଓ ଅନ୍ୟାନ୍ୟ ଧନରତ୍ନ ରଖିଥିଲେ । ସେସବୁ ମୋହନ ଦେଖି ପାରିଲା । ଖୁସି ହୋଇ ଅଳ୍ପ କିଛି ସୁନାମୋହର ନେଇ ଏକ ପୁଟୁଳି ବାନ୍ଧି ଘରକୁ ଫେରିଲା ।

"ଆରେ, ଏ ସୁନା ତୁ କେଉଁଠୁ ପାଇଲୁ ?" ଦୁଇଭାଇ ମୋହନକୁ ପଚାରିଲେ ।

"କୁରାଢ଼ୀରେ ଦେଲି ଚୋଟେ ଯେ ଗଛ ଉପ୍ରେ ଏ ସୁନାତକ ବାନ୍ତି କରି ପକାଇଲା । ତା' ପେଟରେ ତ ସୁନା ଭର୍ତ୍ତି ହୋଇଛି । ମୁଁ ତ ବହୁତ ଅଳ୍ପ ଆଣିଛି ।" ମୋହନ କହିଲା ।

ରାମ ଓ ଶ୍ୟାମ ମୋହନକୁ ସଙ୍ଗରେ ନେଇ ଗଛ ପାଖକୁ ଗଲେ ଓ ସବୁତକ ସୁନା, ଧନରତ୍ନ ଦୁଇ ତିନିଟା ଥଳୀରେ ଭର୍ତ୍ତି କରି ଘରକୁ ଫେରିଲେ ।

ଫେରିବା ବାଟରେ ସେମାନେ ମୋହନକୁ କହିଲେ, "ଦେଖ ମୋହନ, ତୁ କାହାକୁ ଏକଥା କହିବୁ ନାହିଁ ।"

"ନା, ନା, ମୁଁ କାହିଁକି କାହାକୁ ଏ ବିଷୟରେ କହିବି ?" ମୋହନ କହିଲା ।

ପୁଣି ତିନିହେଁ ବାଟ ଚାଲିଥା'ନ୍ତି । କିଛି ଦୂର ଯିବା ଉତ୍ତାରୁ ଗ୍ରାମର ପୁରୋହିତ ଅନ୍ୟ ଦିଗରୁ ଆସୁଥିବାର ଦେଖାଗଲା । ସେ ପଚାରିଲେ, "କିରେ, ତିନିଭାଇଯାକ କୁଆଡ଼େ ଚାଲିଛ ? ଆଉ ଏତେ ସବୁ କ'ଣ ଥଳୀରେ ପୂରାଇଛ ?"

"ତା' ଭିତରେ ଗୋଟେ ପଥର ସବୁ ଅଛି ।" ଦୁଇଭାଇ କହିଲେ । କିନ୍ତୁ ମୋହନ ସଙ୍ଗେ ସଙ୍ଗେ କହିଲା, "ଭାଇମାନେ, ଅନ୍ୟମାନଙ୍କୁ ସିନା କହିବ ନାହିଁ, ପଣ୍ଡିତ ପୁରୋହିତଙ୍କୁ ମିଛକଥା କିପରି କହିବା ? ପଣ୍ଡିତ ମହାଶୟ, ଏଥିରେ ସୁନା ଅଛି ।" ମୋହନ ନିଜର ପୁଟୁଳି ଖୋଲି ପଣ୍ଡିତଙ୍କୁ ଦେଖାଇଲା । ଏକାବେଳେକେ ଏତେ ସୁନା ଦେଖି ପଣ୍ଡିତଙ୍କର ବହୁତ ଲୋଭ ହେଲା । ସେ ଥଳୀରେ ହାତ ପୂରାଇ ବଳପୂର୍ବକ ଦୁଇହାତରେ ଦୁଇ ମୁଠା ସୁନା ମୋହର ଉଠାଇ ନେଲେ ।




ମୋହନ ରାଗିଯାଇ କହିଲା, "ଦୁଷ୍ଟ ପଣ୍ଡିତ, ଇଏ କ'ଣ ?" ଏତିକି କହି ଦେଲା କୁରାଢ଼ୀ ଚଳାଇ ପୁରୋହିତଙ୍କ ମୁଣ୍ଡ ଉପରେ । ପୁରୋହିତଙ୍କର ସେଇଠାରେହିଁ ପଞ୍ଚତ୍ୱପ୍ରାପ୍ତି ।

"ଆରେ ମୂର୍ଖ, ଇଏ ତୁ କ'ଣ କଲୁ ? ନିଜ ଜୀବନ ପାଇଁ ତ ବିପଦ ଡାକି ଆଣିଲୁ ପୁଣି ଆମ ଦୁଇଜଣଙ୍କ ପାଇଁ ମଧ୍ୟ ବିପଦ !" ଏକଥା କହି ଦୁଇଭାଇ ପୁରୋହିତଙ୍କ ଶବ ନେଇ ଦୂରରେ ଥିବା ଏକ ଖାଲରେ ପକାଇ ଦେଇ ଯେଝା ଘରକୁ ଚାଲିଗଲେ ।

ପୁଣି ଦୁଇଭାଇ ରାତିରେ ବିଚାର କଲେ କି ମୂର୍ଖ ମୋହନ ଏ ରହସ୍ୟ ସମସ୍ତଙ୍କୁ କହିଦେବ ତ ଜୀବନ ଉପରେ ବିପଦ ପଡ଼ିବ । ତେଣୁ ଦୁହେଁ

ଗାତରେ ଯାଇ ପୁରୋହିତଙ୍କ ଶବକୁ ବାହାର କରି ନେଇ ନଈରେ ଭସାଇ ଦେଲେ । ଆଉ ସେହି ସ୍ଥାନରେ ଗୋଟିଏ ମଲା ଛେଳିକୁ ପୋତିଦେଲେ ।

ପରଦିନ ଗ୍ରାମରେ ସମସ୍ତେ ପୁରୋହିତଙ୍କୁ ଖୋଜିଲେ । କେଉଁଠି ମିଳୁ ନାହାନ୍ତି । ଦିନେ କଥାବାର୍ତ୍ତା ହେଉ ହେଉ ମୋହନ କହିଲା, "ଆରେ, ସମସ୍ତେ ପୁରୋହିତଙ୍କୁ କାହିଁକି ଖୋଜୁଛ ? ମୁଁ ତ ତାଙ୍କୁ କେବେଠୁ ମାରି ପୋତି ପକାଇଛି । ମୋ ସାଥିରେ ଆସ ମୁଁ ଦେଖାଇ ଦେବି ।"

ମୋହନ ଗ୍ରାମବାସୀଙ୍କ ମଧ୍ୟରୁ କେତେକଙ୍କୁ ସାଥିରେ ନେଇ ଯଥା ସ୍ଥାନରେ ପହଞ୍ଚିଲା ଓ ଗାତ ଖୋଳିବାକୁ ଆରମ୍ଭ କଲା । ଗ୍ରାମବାସୀମାନେ ଆଶ୍ଚର୍ଯ୍ୟ ହୋଇ ଅପେକ୍ଷା କରୁଥା'ନ୍ତି ।

"ତାଙ୍କ ମୁହଁରେ ଅଳ୍ପ ଅଳ୍ପ ଦାଢ଼ୀ ଥିଲା ନା ?" ମୋହନ ଖୋଳୁ ଖୋଳୁ ପଚାରିଲା ।

"ହଁ, ହଁ, ନିଶ୍ଚୟ" ଲୋକେ କହିଲେ ।

"ଦୁଇଟା କାନ ଥିଲା ନା ?"

"ହଁ, ନିଶ୍ଚୟ, ତା' ତ ଥିଲା ।" ଗ୍ରାମବାସୀମାନେ କହିଲେ ।

"ତା'ପରେ ମୁଣ୍ଡରେ ଦୁଇଟା ସିଙ୍ଘ ଥିଲା ନା ?" ମୋହନ ଖୋଳୁ ଖୋଳୁ ପଚାରିଲା ।

"ଏଁ, ଶିଙ୍ଘ ପୁଣି କୁଆଡୁ ଆସିଲା ?" ଗ୍ରାମବାସୀମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ଆରେ, ଆପଣମାନେ ମୋ କଥାକୁ ବିଶ୍ୱାସ କରୁ ନାହାନ୍ତି ତ ନିଜେ ଆସି ଦେଖନ୍ତୁ !" ଏକଥା କହି ସେ ଛେଳିର ଅଧାପଚା ଦେହକୁ ଖାଲରୁ କାଢ଼ି ଦେଖାଇଲା ।

ଆରମ୍ଭରୁ ସେମାନେ ସବୁ ବିଶ୍ୱାସ କରୁଥିଲେ । ଏବେ ନିଜ ନିଜ ଭିତରେ କହିଲେ, "ଏ ପାଗଳ, ଗଜମୂର୍ଖ କଥାରେ ପଡ଼ି ଆମେ ଖାଲିଟାରେ ଯାହା ସମୟ ନଷ୍ଟ କଲୁଁ ।" ସେମାନେ ହସି ହସି ଗ୍ରାମକୁ ଫେରିଗଲେ ।

ମୋହନ କିନ୍ତୁ ବୁଝିପାରିଲାନି ତା'ର ଭୁଲ କେଉଁଠି ରହିଲା !





## ସାପ କାମୁଡ଼ାରେ ମୃତ୍ୟୁ

ସାପ କାମୁଡ଼ାରେ ସାରା ପୃଥିବୀରେ ପ୍ରତିବର୍ଷ ୪୦୦୦ ଲୋକ ମରୁଛନ୍ତି । କିନ୍ତୁ ବର୍ମାରେ ଏ ପ୍ରକାର ମୃତ୍ୟୁ ସଂଖ୍ୟା ସର୍ବାପେକ୍ଷା ଅଧିକ ।

## ଅକ୍ଟୋପାଶ

ସମୁଦ୍ର ଜଳତର ଅକ୍ଟୋପାଶର ଶରୀରରେ ପ୍ରାୟ ୨୦୦ ରକ୍ତଶୋଷିବା ,ପାଇଁ ଅଙ୍ଗ ରହିଛି । ତାହା ମଧ୍ୟରେ ପ୍ରାୟ ୩୧୮ କିଲୋଗ୍ରାମର ବୋଝ ବୋହିବାର ଶକ୍ତି ଅଛି ।



## ଆଲାସ୍କାର ହରିଣ



ଆଲସ୍କାର ହରିଣମାନଙ୍କର ଉଚ୍ଚତା ପ୍ରାୟ ସାତଫୁଟ ଆଠଇଞ୍ଚ ଓ ଓଜନ ଆଠଶହ ଷୋହଳ କିଲୋଗ୍ରାମ । ସାରା ପୃଥିବୀର ହରିଣମାନଙ୍କ ମଧ୍ୟରେ ଏମାନେ ବୃହତ୍ତମ । ଏମାନଙ୍କ ଶିଘର ଲମ୍ବା ହେଉଛି ୭୮.୫ ଇଞ୍ଚ ।



ଆପଣ କ'ଣ ସତରେ ଆପଣଙ୍କ ପତ୍ନୀଙ୍କୁ ଭଲ ପାଆନ୍ତି ?




ନୂଆ ପ୍ରେଷ୍ଟୀଜ ସବୁଠାରୁ ନିରାପଦ କାହିଁକି ?






# ଯଦି ଆପଣ ସତରେ ଆପଣଙ୍କ ପତ୍ନୀଙ୍କୁ ଭଲ ପାଆନ୍ତି ତାହେଲେ ପ୍ରେଷ୍ଟୀଜ ଆଣିଦେବାକୁ ମନା କରିବେ କେମିତି ?

Anil Kumar Panigrahi




# ପ୍ରେଷ୍ଟୀଜ

TTK ଉତ୍ପାଦନ




ଏକମାତ୍ର ପ୍ରେଷ୍ଟୀଜ ହିଁ ୧୦୦% ନିରାପଦ । ଏକମାତ୍ର ପ୍ରେଷ୍ଟୀଜର ହିଁ ଅଛି ଜି.ଆର.ଏସ ।

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ. ୫୦

ପୁରସ୍କୃତ ପରିଚୟୋକ୍ତି ନଭେମ୍ବର ୧୯୮୬ ସଂଖ୍ୟାରେ ପ୍ରକାଶ ପାଇବ



Devidas Kasbekar



V. Rajamani

★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ସେପ୍ଟେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଜୁଲାଇ '୮୬ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : "ସପନରେ କାଲି ଦେଖିଲି ମୁଁ ଭାଇ ତୁମେ ବଡ଼ ହୋଇ ଯାଇଛ !
ଦ୍ୱିତୀୟ ଫଟୋ : ହାତରେ ତୁମର ବନ୍ଧୁକ ଧରି ଦେଶର ସୀମାକୁ ଜଗିଛ !!"

ପୁରସ୍କାର ବିଜୟିନୀ : କୁମାରୀ ସ୍ନିଗ୍ଧା ଦାସ, ବଲଣୀ (କେନ୍ଦୁଝର)

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :
ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଙ୍ଗ୍ସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬
ଅନ୍ୟ ଦେଶ ପାଇଁ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାରେ ଲେଖନ୍ତୁ :
ଚନ୍ଦାମାମା ପବ୍ଲିକେଶନ୍ସ, ଚନ୍ଦାମାମା ବିଲ୍ଡିଙ୍ଗ୍ସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

